# କୃଷକ ସଂଗୀତ



ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ

# କୃଷକ ସଂଗୀତ



ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ

# ଷ୍ଟୋର ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଭକ୍ତିଯୋଗ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୧ । |
| ୨ | ଈଶ୍ୱରଭକ୍ତ (୩ୟ ସଂସ୍କରଣ) | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି.ଏ | ଟ ୦ । |
| ୩ | ପ୍ରଣୟପ୍ରବାହ(ଉପନ୍ୟାସ) | ,, | ଟ ୧ ୳ |
| | କମଳକୁମାରୀ ,, | ,, | ଟ ୧ ୳/ |
| ୫ | ବୀରଓଡ଼ିଆ ,, | ,, | ଟ ୧ । |
| ୬ | ହିତକଥା ୧ମ ଭାଗ (ମିତ୍ରଲାଭ) | ,, | ଟ ୦ ।/ |
| ୭ | ,, ୨ୟ ଭାଗ (ସୁହୃଦ୍‌ଭେଦ) | ,, | ଟ ୦ ୳ |
| ୮ | ,, ୩ୟ ଭାଗ (ବିଗ୍ରହ) | ,, | ଟ ୦ ୳ |
| ୯ | ବେତାଳ କଥା | ,, | ଟ ୦ ୳/ |
| ୧୦ | ଦ୍ରୌପଦୀ | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ ୳ |
| ୧୧ | ଶାନ୍ତିଧାରା | ,, | ଟ ୦ ୷ |
| ୧୨ | ଦାସତ୍ୱ ମୋଚନ | ଶ୍ରୀ ଗୋଦାବରୀଶ ମିଶ୍ର ଏମ୍. ଏ. ବି. ଟି. | ଟ ୧ ୳ |
| ୧୩ | ବତ୍ରିଶ ସିଂହାସନ | ଶ୍ରୀ ଗଣପତି ବାଣୀଭୂଷଣ, ସାହିତ୍ୟରତ୍ନାକର | ଟ ୦ ୳/ |
| ୧୪ | ଚୈତନ୍ୟ ଦେବ | ,, | ଟ ୦ ୳ |
| ୧୫ | ଅର୍ଜୁନ | ,, | ଟ ୦ ୳/ |
| ୧୬ | ଖ୍ରୀଷ୍ଟ | ଶ୍ରୀ ବନମାଳୀ ମିଶ୍ର କାବ୍ୟତୀର୍ଥ | ଟ ୦ ୳ |
| ୧୭ | ମିବାର | ଶ୍ରୀ ଶିବପ୍ରସାଦ ଦାଶ | ଟ ୧ । |
| ୧୮ | ମାଡ଼ବାର | ,, | ଟ ୦ ୷ |
| ୧୯ | ପଦ୍ମମଳା(ପଦ୍ୟ କାବ୍ୟ) | ଶ୍ରୀ ନୀଳକଣ୍ଠ ରଥ | ଟ ୦ ।/ |
| ୨୦ | ଦାନ ଦର୍ପଣ (କର୍ଣ୍ଣ) | ,, | ଟ ୦ । |
| ୨୧ | ,, (ହରିଶ୍ଚନ୍ଦ୍ର) | ,, | ଟ ୦ । |
| ୨୨ | ବିଲ୍ୱମଙ୍ଗଳ | ଶ୍ରୀ କୃଷ୍ଣଚନ୍ଦ୍ର କର | ଟ ୦ ୷ |
| ୨୩ | ଯଯାତି | ଶ୍ରୀ ଶ୍ରୀକଣ୍ଠ ଶତପଥୀ | ଟ ୦ ୳ |
| ୨୪ | ପ୍ରବନ୍ଧସାର | ଶ୍ରୀ ଜଗବନ୍ଧୁ ସିଂହ | ଟ ୧ ୧ |
| ୨୫ | ଭ୍ରାତୃଭକ୍ତି (ପଦ୍ୟ) | ଶ୍ରୀ ନିତ୍ୟାନନ୍ଦ ବହିଦାର | ଟ ୦ ।/ |
| ୨୬ | ନେପୋଲିୟନ | ଶ୍ରୀ ବନମାଳୀ ପଣ୍ଡା | ଟ ୧ |
| ୨୭ | ପ[illegible] | ଶ୍ରୀ ଗୋଦାବରୀଶ ମିଶ୍ର ଏମ୍. ଏ. ବି. ଟି. | ଟ ୦ ୷ |
| ୨୮ | ପଦ୍ନା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି.ଏ | ଟ ୦ ୷ |
| ୨୯ | ରାଣା ପ୍ରତାପସିଂହ | ଶ୍ରୀ ଦୟାନିଧି ମିଶ୍ର | ଟ ୦ ୳/ |



# କୃଷକ ସଂଗାଳି

## (କୃଷିର ପ୍ରାଥମିକ ଅବସ୍ଥା) (୧)

ଧନନ୍ତୁ ଧାନ୍ୟ ସମ୍ଭୂତଂ ଧାନ୍ୟଂ କୃଷ୍ୟା ବିନା ନଚ ।
ତସ୍ମାତ୍ ସର୍ବଂ ପରିତ୍ୟଜ୍ୟ କୃଷିଂ ଯତ୍ନେନ କାରୟେତ୍ ।
କୃଷି ର୍ଧନ୍ୟା କୃଷି ର୍ମେଧ୍ୟା ଜନ୍ତୂନାଂ ଜୀବନଂ କୃଷିଃ ।

କୃଷିପରାଶର—

ଇତିହାସ କହେ—ସର୍ବ ପ୍ରଥମେ ଜଗତ ତମାମ ଏକ ଚକଡ଼ା ଅରଣ୍ୟ ଥିଲା । ମନୁଷ୍ୟମାନେ ଅରଣ୍ୟରେ ଗିରି ଗୁହାରେ ରହୁଥିଲେ । ଘରଦ୍ୱାର, ହାତ ହତିଆର ଏବଂ ଶସ୍ୟାଦି କରିବା ସେମାନେ ଜାଣି ନ ଥିଲେ । ଉନ୍ନତ ଢଙ୍ଗରେ ରହି ନ ଜାଣିଲେ ପ୍ରାଣ ନାଶର ଆଶଙ୍କା ନାହିଁ, କିନ୍ତୁ ଖାଦ୍ୟ ଦ୍ୱାରା ପ୍ରାଣ ରକ୍ଷା ନ କଲେ ନ ଚଳେ । ପ୍ରଥମରେ ଅରଣ୍ୟଜାତ ପଦାର୍ଥ ସେମାନଙ୍କର ଖାଦ୍ୟ ଥିଲା । କ୍ରମଶଃ ମନୁଷ୍ୟ ସଂଖ୍ୟା ବୃଦ୍ଧି ପାଇଲା, ଖାଦ୍ୟ ଜିନିସ ଦୁର୍ଘଟ ହେବାକୁ ବସିଲା । ପୋଷକ ପାଇଁ କୋଶେ ଧାଇଁବାକୁ ପଡ଼ିବାରୁ ଖାଦ୍ୟ ଜିନିସ ଯେପରି ପାଖରେ ହୁଏ ତାହାର ଯୋଗାଡ଼ ଚାଲିଲା । ବନ୍ୟ ଜନ୍ତୁଙ୍କ ଉପଦ୍ରବରୁ ଖନ୍ଦ ରକ୍ଷା

କରିବା ପାଇଁ ଜଗା, ରଖା, ବାଡ଼ ବନ୍ଧ ଆବଶ୍ୟକ ହେଲା । ଏକ ସ୍ଥାନରେ ଅନେକ ଦିନ ଶସ୍ୟ ଉତ୍ପନ୍ନ ହେଲା ନାହିଁ । ଭୂମିର ଉର୍ବରା ଶକ୍ତି ବୃଦ୍ଧି କରିବା ଉପାୟ କେବଳ ଜଣା ନ ଥିବାରୁ ସେମାନେ ବାରମ୍ବାର ସ୍ଥାନ ପରିବର୍ତ୍ତନ କରି ଶସ୍ୟ ଉତ୍ପନ୍ନ କରୁଥିଲେ । ଲୋକ ସଂଖ୍ୟା ଦିନକୁ ଦିନ ବଢିଲା, ଭୂମି ସକାଶେ ଧରାମରା ଚାଲିଲା । ଲୋକେ ଖଣ୍ଡିଏ ଖଣ୍ଡିଏ ଭୂମି ନିଜ ଆୟତ୍ତରେ ରଖିଲେ, ଖତଖରଡ଼ା କରି ଭୂମିର ଉର୍ବରା ଶକ୍ତି ବୃଦ୍ଧି କରିବା ଜାଣିଲେ । ଭୂମି ନିକଟରେ କୁଟୀର ନିର୍ମାଣ କରିବା ନିତାନ୍ତ ଆବଶ୍ୟକ ମନେକଲେ । ଲୋକମାନଙ୍କ ଅଶାନ୍ତ ଶାନ୍ତ କରିବାପାଇଁ ରାଜା ଜଣକର ନିଯୁକ୍ତି ପ୍ରୟୋଜନ ମନେକଲେ ।

କୃଷି ପରାଶର, ଋକ୍‌ବେଦ ପ୍ରଭୃତିରୁ ଜଣାଯାଏ—ଭାରତବର୍ଷ କୃଷିପ୍ରଧାନ ଦେଶ । ଅନେକ କାଳରୁ ଭାରତବାସୀଙ୍କ କୃଷି ହିଁ ପ୍ରଧାନ ବ୍ୟବସାୟ ହୋଇ ଅଛି । ଖ୍ରୀଷ୍ଟ ପୂର୍ବ ପ୍ରାୟ ୨୦ ଶ ଶତାବ୍ଦୀରେ ଆର୍ଯ୍ୟମାନେ ଭାରତବର୍ଷରେ ଉପନିବେଶ ସ୍ଥାପନ କରି କୃଷି କାର୍ଯ୍ୟ କରୁଥିବାର ଉଲ୍ଲେଖ ମିଳେ । ଋକବେଦରେ କୃଷକମାନଙ୍କ ରାଜା " କୃଷିପତି " ନାମରେ ଆଖ୍ୟାତ । କୃଷକମାନଙ୍କ ମଧ୍ୟରେ ସେତେବେଳେ ଭାରି ମେଳ ଥିବାରୁ ସେମାନେ ସମସ୍ତେ ଏକ ମନରେ ଯୋଗ୍ୟ ଲୋକଙ୍କୁ ରାଜାସ୍ୱରୂପ ବାଛୁଥିଲେ । ରାଜଗାଦିରେ ବସାଇଦେଇ କୃଷକମାନେ ରାଜାଙ୍କ ସମ୍ମୁଖରେ କହୁଥିଲେ—ହେ ମହାଭାଗ ! ଆପଣ ଯେତେଦିନ ପର୍ଯ୍ୟନ୍ତ ନିଜର କର୍ତ୍ତବ୍ୟ ଭଲଭାବରେ ପାଳନ କରିବେ, ତେତେ ଦିନ ପର୍ଯ୍ୟନ୍ତ ଆମର ରାଜା ହୋଇ କେବଳ ରହି ପାରିବେ । ରାଜାଙ୍କ କର୍ତ୍ତବ୍ୟ ହେବ କ'ଣ ? ଭୂମି ସମ୍ପର୍କୀୟ ବା ଯେ କୌଣସି ପ୍ରକାର ଅଶାନ୍ତି ଉପସ୍ଥିତ ହେଲେ, ବହୁତ ଉପାୟ କରି ଶାନ୍ତ କରିବା ରାଜାଙ୍କ ପ୍ରଧାନ କର୍ତ୍ତବ୍ୟ ଥିଲା । ଚୋରହାର ପାଇଁ ରାଜା ଦାୟୀ ରହୁଥିଲେ । ଚୋରାମାଲ ଧରି ନ

ଗଲେ ରାଜା ରାଜକୋଷରୁ ଦେଇ କୃଷକଙ୍କୁ ତୃପ୍ତ କରୁଥିଲେ । ଦୁର୍ଭିକ୍ଷ-ବେଳେ ରାଜସ୍ୱ ମାଫ କରାଯାଉଥିଲା । କୃଷକଙ୍କୁ ନାନା ବିପଦ ଆପଦରୁ ରକ୍ଷା କରନ୍ତି ବୋଲି, ଅଦାୟର ଏକ ଅଂଶମାତ୍ର ରାଜସ୍ୱ ସ୍ୱରୂପ ସେମାନେ ସାଧାରଣତଃ ରାଜାଙ୍କୁ ଦେଉଥିଲେ ।

ମୁସଲମାନ ରାଜତ୍ୱରେ କୃଷକମାନେ କର ଦେଉ ନ ଥିଲେ; ଦେଉଥିଲେ ଭେଟି । ଆଇନ ଆକବରୀରୁ ଜଣା ଯାଏ—କୃଷକଙ୍କୁ ମୁସଲମାନ ରାଜାମାନେ ଅତିବୃଷ୍ଟି ଅନାବୃଷ୍ଟିରୁ ରକ୍ଷା କରିବାକୁ ଦାୟୀ ଥିଲେ । ଯଥେଷ୍ଟ ପରିମାଣରେ ସେମାନଙ୍କୁ ଗୋଚର ଭୂମି ଦିଆ ଯାଉଥିଲା; ରାଜ କୋଷରୁ ସେମାନେ ଋଣ ବଡ଼ ସୁବିଧାରେ ପାଉଥିଲେ । ରାଜାଙ୍କ କର୍ମଚାରୀମାନେ ଶୃଙ୍ଖଳା ପାଇଁ ପୂର୍ଣ୍ଣ ମାତ୍ରାରେ ଦାୟୀ ଥିଲେ । ଏହି କାରଣରୁ କୃଷକଙ୍କ ଫସଲର ଏକ ଷଷ୍ଠାଂଶ ଭେଟି ସ୍ୱରୂପ ରାଜାଙ୍କ ପ୍ରାପ୍ୟ ଥିଲା । ସା ୧୮୧୩ ଲର ଇଷ୍ଟ ଇଣ୍ଡିଆ କମ୍ପାନିର ୫ମ ରିପୋର୍ଟରୁ ପ୍ରକାଶ—କୃଷକଙ୍କ ଠାରୁ କର ଆଦାୟ କରି ରାଜକୋଷକୁ ପ୍ରେରଣ କରିବା ପାଇଁ ଜମିଦାରଙ୍କ ନିଯୁକ୍ତି । ସେମାନେ କର ଆଦାୟ କରୁଥିଲେ, ରୁସୁମ (କମିଶନ୍) ପାଉଥିଲେ ସେତିକ । ସେମାନଙ୍କର ରୟତଙ୍କ ଉପରେ କୌଣସି ପ୍ରକାର ସ୍ୱାମୀତ୍ୱ ଚଳୁ ନ ଥିଲା । ଜମିଦାରମାନେ ରୟତଙ୍କ ଆଗ୍ରହ ଅନୁଗ୍ରହର ପାତ୍ର ଥିଲେ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

ତାହା ଆଉ ନାହିଁ । କୃଷକଙ୍କ ମଧ୍ୟରେ ଯେଉଁ ଟିକିକ ସହଯୋଗିତା ଥିଲା, କ୍ରମଶଃ ନଷ୍ଟଭ୍ରଷ୍ଟ ହେଲା । ଘୃଣାଭାବ ଏତେଦୂର ବଢ଼ିଲା ଯେ, ସେମାନଙ୍କ ମଧ୍ୟରୁ ଅନେକେ ଏକାବେଳକେ ଅସ୍ପୃଶ୍ୟ ହେଲେ ଗଲେ; ସହଯୋଗିତା ଟିକିକ ଜାତିଆଣ ସଭା ଆକାରରେ ଦେଖାଗଲା । ଜାତି-ଆଣ ସଭା ଦିନକୁ ଦିନ ଉତ୍କଟରୁ ଉତ୍କଟତର ହୋଇ ଲୋକ ହୃଦୟରେ

ଗୋଷ୍ଠୀଏ ଭେଦଭାବ ଜାଗ୍ରତକଲା । ଭେଦଭାବରୁ ହିଂସା, ଈର୍ଷ୍ୟା, ଧର୍ମମତ ଗ୍ରହିଲା । ସ୍ୱାତନ୍ତ୍ର୍ୟ ଆସିବ କୁଆଡ଼ୁ ? ସହଯୋଗିତା ବିନା ସ୍ୱାତନ୍ତ୍ର୍ୟ, ସୌହାର୍ଦ୍ଦ, ସ୍ୱାଚ୍ଛନ୍ଦ୍ୟ, ସୁଖ । ଯଦ୍ୟପି ଖଣ୍ଡ କାଟି ହେଉ ବଡ଼ା ହୋଇଥିଲେ କୌଣସି ଘଟର ସମ୍ଭାବନା ନାହିଁ ; ଗୋଷ୍ଠ ଗୋଷ୍ଠ ହେଲେ ଛୋଟ ପିଲା ମଧ ସେଥି ଉପରେ ଅତ୍ୟାଚାର କରିପାରେ । କୃଷକଙ୍କ ଏଭଳି ଛିନ୍ନ ଭିନ୍ନ ଅବସ୍ଥାରେ ଦୁର୍ଯୋଗ ବଜ୍ରପାତ ହେଲା, କୃଷକଙ୍କ ସିଂହ ବିକ୍ରମ ଚୂର୍ଣ୍ଣିଭୂତ ହେଲା । ସ୍ୱାତନ୍ତ୍ର୍ୟ ଗଲା, ଧନ ଗଲା, ମର୍ଯ୍ୟାଦା ଗଲା । ଯେଉଁ ଜମିଦାରମାନେ ଭୃତ୍ୟ ଏଜେଣ୍ଟ ଥିଲେ, କର ଆଦାୟ କରି ଦେଇ ଭୃତ୍ୟ ପାଉଥିଲେ, ସେମାନେ ହେଲେ କୃଷକମାନଙ୍କ ଅଧିପତି । କୃଷିପତିଙ୍କୁ କୃଷକମାନେ ଯେଉଁ ପରି ନିଜର କରି ହାତରେ ରଖିପାରି ଥିଲେ, ସହଯୋଗିତା ଅଭାବରୁ ତାହା ଆଉ ହେଲାନାହିଁ । ସେମାନେ ହେଲେ ଜମିଦାରଙ୍କ ହସ୍ତରେ କ୍ରୀଡ଼ା ସାମଗ୍ରୀ ।

୧୭୯୩ ସାଲରେ କୃଷକଙ୍କ ସ୍ୱାତନ୍ତ୍ର୍ୟ ଲୋପ ପାଇ ଅଛି । ସେହି ସାଲରେ ଲର୍ଡ କର୍ଣ୍ଣୱାଲିସ ଜମିଦାରଙ୍କୁ ଜମିରେ ନିର୍ଦ୍ଦ୍ୱନ୍ଦ୍ୱ ଅଧିକାର ଦେବାଦ୍ୱାରା କୃଷକଙ୍କ ସ୍ୱାତନ୍ତ୍ର୍ୟ ପଦଦଳିତ ହୋଇଅଛି । ସା୧୭୯୩ଲରେ ସେ ଯେଉଁ ଜମିଦାରୀ ସୃଷ୍ଟି କଲେ, ତାହା ୧୭୮୪ ସାଲରେ ଷ୍ଟାଚ୍ୟୁଟ୍ ୨୪ [Geoiii] ୩୯ ଧାରା ବିରୁଦ୍ଧ କଥା । ତାହା ବୁଝୁଛି କିଏ ? ବର୍ତ୍ତମାନ କୃଷକଙ୍କ ମଧରେ ଯେପରି ବିଶୃଙ୍ଖଳା ରହିଛି, ପୂର୍ବ ସ୍ୱାତନ୍ତ୍ର୍ୟ ଫେରିବା ଆଶା ଆକାଶ କୁସୁମ ପରି ଜଣାଯାଏ ।

ସହଯୋଗିତା ଉନ୍ନତିର ମୂଳହେତୁ । ଆଜି ଜାପାନ, ଆମେରିକା, ଇଟାଲିର କୃଷକ ସହଯୋଗିତା ବଳରେ ନିଜର ଅଖଣ୍ଡ ସମ୍ମାନରକ୍ଷା କରି ପାରୁଛି । ହୁଲଫଙ୍କ ମତରେ—ଧନ ଘଟି ହେବ ବୋଲି ଇଟାଲିର

କୃଷକ, କୃଷକ ଉପରେ ମକର୍ଦ୍ଦମା ଚଳାଏ ନାହିଁ । ଆମଦେଶ କଥା ଜନ୍ମ ସମ୍ପୂର୍ଣ୍ଣ ଭିନ୍ନ । ଆମର ଯାହା କିଛି ଅଛି—ପୂର୍ବର ଗୌରବ ସୂଚକ । ଆମ ଭିତରେ ସହଯୋଗିତା ଦେଖା ନ ଯିବା ପର୍ଯ୍ୟନ୍ତ କୃଷ୍ଣ କଥାଭଳି ଗୋପାଙ୍ଗନାମାନେ ଯାହା ହେଉ ଥିଲେ, ପୂର୍ବ ଗୌରବ କଥାଭଳି ଆମ ଲୋକେ ସେହି ଭଳି ହେବା ଛଡ଼ା ଆମର ଆଉ ଅନ୍ୟ ଗତି ନାହିଁ ।



## କୃଷକ ଭାରି ଦରିଦ୍ର (୨)

"The secret of the whole prosperity of the agricultural population was the filling of their stomachs"

Mr. Gandhi.

ଭାରତର ୧୦୦ରୁ ୭୩ କୃଷକ—ଏହି କଥା ନାନା ରେକାର୍ଡରୁ ସ୍ପଷ୍ଟ । ଭଲ ଖାଦ୍ୟ ହେବା ବର୍ଷ ସେମାନଙ୍କ ମଧ୍ୟରୁ କେବଳ ୭୨ ଜଣ ଖାଇବାକୁ ପା'ନ୍ତି । ଡାକ୍ତର ଅଜାରଆଙ୍କ ମତରେ—ଭାରତର ୧୦ କୋଟିରୁ ଅଧିକ ପୂର୍ଣ୍ଣ ଆହାର ପା'ନ୍ତି ନାହିଁ; ୪ କୋଟି ଓଳିଏ ଲେଖାଏ ଖାଇ ଜୀବନ୍ମୃତ ଅବସ୍ଥାରେ ସମୟ କଟା'ନ୍ତି; ୫୦ ଲକ୍ଷରୁ ଅଧିକ କୋଇଲି ଛାଲି ଖା'ନ୍ତି । ସଲପଗୁଣ୍ଡ, ଘାସ, ପତ୍ର, କନ୍ଦା ଯେ କେତେ ଲୋକର ପ୍ରାଣ ରଖେ, ତାହା କହିବା ଅନାବଶ୍ୟକ । ଏହି ଦାରିଦ୍ର୍ୟ-ଦୁଃଖ ହୁଏ କୃଷକଙ୍କ କେବଳ ଘର ସହିତର । କାରଣ କ'ଣ ? ଅନେକ କାରଣ ଅଛି । ତହିଁରୁ କେତୋଟି ତଳେ ଦିଆଗଲା:—

୧ । ଲୋକସଂଖ୍ୟା ତୁଳନାରେ କୃଷକର ଆୟ କମ୍ । ଖ୍ରୀ୧୮୯୧—୧୯୨୧ ଭିତରେ ଭାରତରେ ଅଢ଼େଇ କୋଟି ଲୋକ ବୃଦ୍ଧି ପାଇଅଛି,

ଧାନ, ଗହମ ଖାଦ୍ୟ ଜିନିଷର ବୃଦ୍ଧି ନାହିଁ । ଅଷ୍ଟ୍ରେଲିଆ, ଆଫ୍ରିକା, ରୋମାନିଆ ପ୍ରଭୃତି ଦେଶରେ ଅଦ୍ୟାପି ଭୂମି ଭଙ୍ଗା ଚାଲିଛି । ଭାରତର ବଣ, ପର୍ବତ ସବୁ ସରିଲାଣି । ୧୯୨୪ରେ ୧୫୨୮,୯୩,୩୪୩ ଏକର ଭୂମିରେ ଚାଷ ହେଉଥିଲା । ଗୋଚର ଭୂମି ବୋଲି ମଧ ଖଣ୍ଡେ ଭଲ କରି ନାହିଁ । ୟୁଲ ସାହେବ କହନ୍ତି—

"——a nation so placed naturally suffers from chronic starvation and would gradually dwindle away"

ତେଣୁ ଅଉ କି ଉପାୟ ? ଏପରି ଅବସ୍ଥାରେ ଆମ୍ଭମାନଙ୍କର କୁଟୀର ଶିଲ୍ପ ହିଁ ପ୍ରଧାନ ସମ୍ବଲ ।

୨ । ଦୁର୍ଭିକ୍ଷ——ଆମ ଦେଶରେ ଦୁର୍ଭିକ୍ଷର ଦାଉ ବେଶି । ମୋଗଲ ଶାସନରେ ଲୋକେ ଭୋଗି ଥିଲେ ଚଉଦଟି ଦୁର୍ଭିକ୍ଷ । ହିସାବ କରି ବସିଲେ ପଲାସି ଯୁଦ୍ଧଠାରୁ ଆଜି ସୁଦ୍ଧା ଲୋକେ ୩୫ଗୋଟି ଦୁର୍ଭିକ୍ଷର ଧକ୍କା ଖାଇଛନ୍ତି । ଡାକ୍ତର ଅଜାରିଅଙ୍କ ମତରେ—ବ୍ରିଟିଶ ଶାସନର ପଚିଶି ବର୍ଷ ମଧ୍ୟରେ ଦେଶରେ ଚବିଶଟି ଦୁର୍ଭିକ୍ଷ ପଡ଼ିଥିଲା । ଅନାହାର କଷ୍ଟରେ ୧୫ କୋଟି ଲୋକ ଜୀବନ୍ମୃତ ଜୀର୍ଣ୍ଣ ହୋଇ ପଡ଼ିଥିଲେ । ଅତିବୃଷ୍ଟି, ଅନାବୃଷ୍ଟି, କଞ୍ଚା ଜିନିଷ ରପ୍ତାନି ଦୁର୍ଭିକ୍ଷର ଅବଶ୍ୟ ପ୍ରଧାନ କାରଣ । ଅତିବୃଷ୍ଟି ଅନାବୃଷ୍ଟି ଯୋଗୁଁ ଫସଲ ନଷ୍ଟଭ୍ରଷ୍ଟ ହେଲେ କୃଷକମାନେ ଉପାୟଶୂନ୍ୟ ହୋଇ ଅନାହାରରେ ପ୍ରାଣତ୍ୟାଗ କରନ୍ତି । କଞ୍ଚା ଜିନିଷର ସଦ୍ବ୍ୟବହାର କରିବା ଶିକ୍ଷା ଅଭ୍ୟାସ ଥିଲେ, ସେମାନଙ୍କୁ ଏତେ କଷ୍ଟ ସହିବାକୁ ହୁଅନ୍ତା ନାହିଁ ।

୩ । ବଢ଼ି—ଅତି ବୃଷ୍ଟିବେଳେ ବର୍ଷା ଜଳ ନଦୀ କେନାଲରେ ଯାଇ ଭୂମିରେ ମାଡ଼େ, ବଳକା ସମୁଦ୍ରକୁ ଖସେ । କ୍ରମଶଃ ନଦୀମୁହାଣ, କେନାଲ ପ୍ରଭୃତି ପୋତୁଆ ହୋଇ ଯିବାରୁ ବଳକା ଜଳ ସମୁଦ୍ରକୁ ଝସି ନପାରି ବାଲିବାଡ଼ି ଘର ନଷ୍ଟ କରିଥାଏ । ଏଥିଯୋଗୁଁ କୃଷକକୁଳ ଛିନ୍ନ ହୋଇ-ଥା'ନ୍ତି । ଶାସକଙ୍କ ଏଥିପ୍ରତି ଦୃଷ୍ଟି ନ ପଡ଼ିବା ପର୍ଯ୍ୟନ୍ତ ଅନ୍ୟଗତି ନାହିଁ ।

୪ । ବିବାହରେ ଅଯଥା ବ୍ୟୟ—ବିବାହାଦିଶୁଭକାର୍ଯ୍ୟ ବେଳେ ଅକାତରେ ଧନବ୍ୟୟ କରିଯିବା ଆମ୍ଭମାନଙ୍କ ଗୋଟିଏ ଦୁରଭ୍ୟାସ । ଧନିକମାନେ ବହୁବର୍ଷର ସାର ସଞ୍ଚୟ ଏକଦିନରେ ଶେଷ କରନ୍ତି, ଗରିବ ବିଚାରିମାନେ—'ସବୁଯାଉ ମହତ ଥାଉ' ନୀତି ପାଳନ କରି ଋଣକରି ଗୁଡ଼ାଏ ବ୍ୟୟକରେ । ଫଳ ଯେ ହୋଇ ଭୟଙ୍କର ହୋଇ ଉଠିଥାଏ, ତାହା କହିବା ଅନାବଶ୍ୟକ । ବିବାହଆଦି କାର୍ଯ୍ୟର ପରଦିନ ଅନେକ ଲୋକଙ୍କୁ ଅସାମରେ ପଶିବାକୁ ବାଧହୁଅନ୍ତି । ଘର, ଦ୍ୱାର, ପିଲାକୁ ଜନ୍ମ-ତ୍ୟାଗ, ଚିରପ୍ରବାସ, ଅକାଳ-ମୃତ୍ୟୁ, ଭୟଙ୍କର ଦାରିଦ୍ର୍ୟ ବରଣ କରିବା ଅପେକ୍ଷା ବିବାହାଦି ଶୁଭକାର୍ଯ୍ୟମାନଙ୍କରେ ସାବଧାନରେ ଚଳି ପାରିଲେ, ଚୂନାଦେଖି ଚିଠାର ଆୟୋଜନ କଲେ, ପ୍ରଧାନତଃ କୃଷକକୁଳର ଅବସ୍ଥା ଏତେଦୂର ଶୋଚନୀୟ ହୁଅନ୍ତା ନାହିଁ ।

୫ । ଅସଙ୍ଗତ ବିବାହ—ଅନ୍ଧ, ଖଞ୍ଜ, ରୁଗ୍ନ, ଅଧମ, ଅକର୍ମଣ୍ୟ, ଦରିଦ୍ର ଲୋକେ ବିବାହ କରିବା ଅବିଧି । ନିଜର ଅବସ୍ଥା ଯାହାହେଉ, ସେଥିପ୍ରତି ଆଦୌ ଦୃଷ୍ଟି ନ ଦେଇ ଲୋକେ ବିବାହ କରିଯାନ୍ତି । ଯାହାର ନିଜରକ୍ଷଣ ଅସମ୍ଭବ ସେ କାହିଁକି ବିବାହ କରିବାପାଇଁ ଏତେ ବ୍ୟାକୁଳ ? ରୁଗ୍ଣ ଲୋକେ ବିବାହ-ବନ୍ଧନରେ ବାନ୍ଧିହୋଇ ଜଗତରେ ରୁଗ୍ଣସଂଖ୍ୟା ବୃଦ୍ଧିକରି ଥାନ୍ତି, ଦରିଦ୍ରଲୋକେ ବିବାହଦ୍ୱାରା ଦରିଦ୍ର ସଂଖ୍ୟା ବୃଦ୍ଧି କରନ୍ତି । ତଦ୍ୱାରା

ସମାଜର ଯେ ଗୁରୁ କ୍ଷତି ଅବଶ୍ୟମ୍ଭାବୀ, ତାହା ସହଜେ ଅନୁମେୟ । ଦରିଦ୍ର ଲୋକେ ବିବାହ କରିବାଦ୍ୱାରା ଘୋର ଅକ୍ଷମଣୀୟ ପାପ ଅର୍ଜ୍ଜନ କରିଥାନ୍ତି । ଦରିଦ୍ର ବିଶ୍ୱ ନିଜ ଅବସ୍ଥା ସ୍ୱଚ୍ଛଳ କରିବା ପାଇଁ ଅକ୍ଷମ ହେବାରୁ ଗୁରୁଦୁଃଖ ଜୀବନ ବ୍ୟାପୀ ଭୋଗକରେ । ତେବେ ସେ ବିବାହ-ଦ୍ୱାରା ସନ୍ତାନ ଲାଭକରି ସେମାନଙ୍କୁ ନିଷ୍ଠୁର ଦାରିଦ୍ର୍ୟର ତୀବ୍ରପ୍ରହାରରେ ଅହରହଃ ପୀଡ଼ା ଦେବା ବଡ଼ ଅଧର୍ମ ସିନା ! ଅନେକ ଗରିବ ଲୋକ ସାମୟିକ ଉତ୍ତେଜନା ସମ୍ଭାଳି ନ ପାରି ଏକାଧିକ ପତ୍ନୀ କରିଥାନ୍ତି । ତଦ୍ୱାରା ସେମାନଙ୍କ ପାପର ମାତ୍ରା ଅଧିକରୁ ଅଧିକ ହୁଏ, ଦେଶ ତମାମ ହାହାକାର ଧ୍ୱନିରେ ପ୍ରତିଧ୍ୱନିତ ହୋଇ ଉଠେ ମାତ୍ର । ଆମଦେଶରେ ପରମ୍ପରାନୁକ୍ରମେ ଏଭଳି ଅସଙ୍ଗତ ବିବାହ ପ୍ରଥା ଚଳି ଆସୁଛି, ସାହି ସାହି ଗାଁ ଗାଁ ଦରିଦ୍ର ଭିକ୍ଷୁକରେ ପୂର୍ଣ୍ଣ ହେଉଅଛି । ଏଇ ଧରଣର ଅସଙ୍ଗତ ବିବାହ ଯେ ଦାରିଦ୍ର୍ୟର ଏକ ପ୍ରଧାନ କାରଣ ତାହା କହିବା ବାହୁଲ୍ୟ । ଦାରିଦ୍ର୍ୟର ତୀବ୍ର କଷାଘାତରୁ ରକ୍ଷା ପାଇବାକୁ ହେଲେ, ତାତ୍‌କ୍ଷଣ ସର୍କାର ପକ୍ଷରୁ ହେଉ ବା ଶିକ୍ଷିତବ୍ୟକ୍ତିଙ୍କ ସମବେତ ଚେଷ୍ଟାରୁ ହେଉ, ଏପରି କଡ଼ା ନିୟମ ହେବା ଉଚିତ, ଯେପରି ବହୁ ବିବାହ ଏବଂ ଅସଙ୍ଗତ ବିବାହ ପ୍ରଥା ସମାଜରେ ଶୀଘ୍ର ରହିତ ହେବ ।

୬ ସାହୁକାରଙ୍କ ଅତ୍ୟାଚାର—ଆମ ଭିତରେ ଋଣ ଦିଆନିଆ ବ୍ୟବସାୟ କରି ପଞ୍ଝାଏ ଥା'ନ୍ତି । ତାଙ୍କୁ ସାଧାରଣତଃ ସାହୁକାର କହାଯାଏ । ସେମାନେ ମୂଳ ଧନ ଉପରେ ଏତେ ପୀଡ଼ାସୁଧ କଷି ନିଅନ୍ତି ଯେ, ଖାତକ-ବିଶ୍ୱ ଗୁଣକୁ ଦିଗୁଣ ଦେଇ ସାହୁକାର ହାତରୁ ଫିଟିବା ପରେ ପେଟକୁ ପୋଷେ ବୋଲି ଆଉ ପାଏ ନାହିଁ । H. K. Sanyal ଙ୍କ ମତରେ

"......money lenders......at one time charged as high a interest as 150 p. c. or even more for money lent"

ସାହୁକାରଙ୍କ ଜଳନ୍ତା ଅଗ୍ନିକୁଣ୍ଡରେ ପଡ଼ି ଧ୍ୱଂସ ହେଉଛନ୍ତି । ଗରଜ ବେଳେ ସ୍ଥିରତର ଅସ୍ତିରୁ ଉଚିତ ଦରରେ କିଛି ବନ୍ଧକ ଦେଇ କାର୍ଯ୍ୟ ଚଳାଉ-ଥିଲେ ବରଂ ଭଲ ହୁଅନ୍ତା । ସମବାୟ ଋଣ ସମିତି ବାସ୍ତବିକ କୃଷକଙ୍କ ଦୁରବସ୍ଥା ମୋଚନ କରିବ । ଅନେକ ଅଞ୍ଚଳରେ ଋଣ ସମିତି କୃଷକଙ୍କ ଦୁଃଖହରଣ କରିବା ଭଳି ଅନୁଭୂତ ହୋଇନାହିଁ । କୃଷକଙ୍କ ଅବସ୍ଥା ଭଲ କରିବାକୁ ହେଲେ ପ୍ରତିଗାଁରେ କୃଷିବ୍ୟାଙ୍କ ସ୍ଥାପନ କରିବା ଉଚିତ । 'ପଲ୍ଲୀ କୋଷାଗାର' ଜରମନୀ କୃଷକର ଦାରିଦ୍ର୍ୟ ଦୂର କରି ତାକୁ ଆଜି ଏତେ ଉଚ୍ଚରେ ରଖି ଅଛି । ଫ୍ରେଜରଙ୍କ ମତରେ ଜର୍ମାନୀର ପଲ୍ଲୀବ୍ୟାଙ୍କ ସ୍ଥାପନ ହେଲେ ଭାରତୀୟ କୃଷକଙ୍କ ଦୁଃଖ ଦୂର ହେବ ।

୭ । ମକଦ୍ଦମା—ସାହୁକାରିକ ସମ୍ପର୍କ, ଭ୍ରାତୃବିଦ୍ରୋହ, ଜମି-ଆକ୍ରମଣ, ଦୁଶ୍ଚରିତ୍ର ଦୋଷ, ଅପମାନ, ଶ୍ରେଷ୍ଠ୍ୟ ପ୍ରଭୃତି କାରଣରୁ ଲୋକେ ତ କୋର୍ଟ କଚେରୀର ପ୍ରଶ୍ରୟ ନିଅନ୍ତି । ଅନେକ ସମୟରେ ରାଗ, ହିଂସା ଦ୍ୱେଷରୁ ମଧ୍ୟ ସାମାନ୍ୟ କଥା କଥାକେ ଲୋକେ ନିଜର ଟେକ ବଜାୟ ରଖିବା ଉଦ୍ଦେଶ୍ୟରେ, ମକଦ୍ଦମାରେ ଅଜସ୍ର ଧନ ବ୍ୟୟ କରି, ଶେଷରେ ଭିକାମୁଣି ଧରି ବୁଲୁଥିବା ନୂଆଁ କଥା ନୁହେ । ଏଥିରୁ ଲୋକେ ରକ୍ଷା ପାଇବେ କିପରି ? ସାମାନ୍ୟ ଅନର୍ଥ ଯୋଗୁଁ ବର୍ଷାଧିକ କୋର୍ଟବୁଲି ଘରଦ୍ରବ୍ୟ ପରିକୁ ଦେବା ଅପେକ୍ଷା ଗାଁ ପଞ୍ଚାୟତରେ ବିଷୟ ନିଷ୍ପତ୍ତି କରି ନେବା ଉଚିତ । ଆଉ ଗୋଟିଏ କଥା—ଆମ ଦେଶରେ ଲୋକେ ନାନା ଜାତିରେ ସ୍ୱତଃ ବିଭକ୍ତ ହୋଇ ରହିଛନ୍ତି । ପ୍ରତି ଜାତି ଫେରେ ନିଜ ଜାତିଆଣି ସଭାର ନିୟମମାନ ରଚନ୍ତି । ସେହି ଜାତିଆଣି ସଭାମାନଙ୍କରେ ଯେ କୌଣସି ଧରଣର ଅଭିଯୋଗ ନିଷ୍ପତ୍ତି ପାଇପିବା କଠିନ ନୁହେ । ତେବେ କୋର୍ଟ କଚେରୀ ପର୍ଯ୍ୟନ୍ତ ଯାଇ ଦ୍ରବ୍ୟ ଶୂନ୍ୟ ହେବା ସୁବିବେଚକର କାର୍ଯ୍ୟ ନୁହେ ।

୮ । କୁଟୀର ଶିଳ୍ପ—କୃଷି କର୍ମ୍ମ କଥାରେ କୃଷକ ରମଣୀର ବର୍ଷକେ କେବଳ ଛଅମାସ କଟେ, ଆଉ ୬ ମାସ ପାଇଁ କାର୍ଯ୍ୟ ଲୋଡ଼ା । ସେମାନଙ୍କ ମଧ୍ୟରୁ ଅଳ୍ପ ସଂଖ୍ୟକ ମାତ୍ର କୁଟା କଣ୍ଡା ପଟ୍ଟବୁଣା ସିଲେଇ କାର୍ଯ୍ୟରେ ଲାଗନ୍ତି । ଅଧିକାଂଶ ସେମାନେ ଗରିବ ହେଲେ ମଧ୍ୟ ହାତ ଯୋଡ଼ି ବସି ରହନ୍ତି । ଆଳସ୍ୟ ବଶତଃ ସେମାନେ ଯେ ବସି ରହନ୍ତି ତାହାନୁହେ, ଉପରୋକ୍ତ ସେହି କେତୋଟି କାର୍ଯ୍ୟ କରିବା ପାଇଁ ସମସ୍ତଙ୍କୁ ଆବଶ୍ୟକ ହୁଏ ନାହିଁ । ୧୦୦ରେ ଦୁଇଜଣ ମାତ୍ର ସେଥିରେ ନିଯୁକ୍ତ ରହିଲେ ଯଥେଷ୍ଟ ହୁଏ । ଅନ୍ୟ ସମସ୍ତେ ଅନ୍ୟାନ୍ୟ ଗୃହଶିଳ୍ପ ପ୍ରତି ଦୃଷ୍ଟି ଦେବା ସେମାନଙ୍କ ଦରକାର । ଗୃହଶିଳ୍ପ ବୋଲି ଯେଉଁ କେତୋଟି ପୂର୍ବରେ ଚଳେ, ଦୁଃଖର କଥା ସେଗୁଡ଼ିକ ଅଳ୍ପ ବର୍ଜ୍ଜନ ହୋଇ ଯାଇଅଛି । ଆଜିକାଲି କୃଷକ କୂଳର ଅବସ୍ଥା ଯେପରି, ଗୃହସ୍ଥ ଗୃହିଣୀ ଉଭୟେ ଅର୍ଜ୍ଜନ ପନ୍ଥା ନ ଖୋଜିଲେ ବର୍ଷକେ ୬ ମାସ ଅନାହାରରେ ରହିବା କଥା । ଖଲିସିଁଆ, ସୂତାକଟା, ଲୁଗାବୁଣା, ତଳିତଗଡ଼ା, ସିଲେଇକାମ, ଚିତ୍ରକାର୍ଯ୍ୟ, କୁଟାକଣ୍ଡା ପଟ୍ଟବୁଣା ସବୁ କରିଯିବା ଉଚିତ । ତାହା ହେଲେ ସମସ୍ତଙ୍କୁ ସବୁ ସମୟରେ କାର୍ଯ୍ୟ ଯୁଟିବ, ସୁନ୍ଦର ରୂପେ ଜୀବିକା ନିର୍ବାହ ହେବ । ଖଲିସିଆଁ କୁମ୍ଭାରର, ସୂତାକଟା ଲୁଗାବୁଣା ତନ୍ତୀର, ତଳିତଗଡ଼ା ଖଦାଳର, ଚିତ୍ରକାମ ଚିତ୍ର-କାରର, ସିଲେଇକାମ ଦରଜିର; ଅନ୍ୟ ଲୋକେ କଲେ ଭାରି ପାପ । ଏହିଭଳି ଅମୂଳକ-ବିଶ୍ୱାସ-ସ୍ରୋତରେ ଭାସି ଭାସି ଲୋକେ ଦାରିଦ୍ର୍ୟ ବରଣ କରନ୍ତି । ସମସ୍ତଙ୍କୁ ସକଳ କାର୍ଯ୍ୟ କରିବାକୁ ଅଧିକାର ଅଛି—ଏହି ବିଶ୍ୱାସରେ କୃଷକରମଣୀ ଉପରୋକ୍ତ ପ୍ରକାର ଗୃହଶିଳ୍ପରେ ମନଦେଲେ ଅନେକ ପରିମାଣରେ ଦାରିଦ୍ର୍ୟ ଦୁଃଖ ଦୂର ହେବ, ସନ୍ଦେହ ନାହିଁ ।

୯ । ଆଳସ୍ୟ—ଅଳ୍ପ ଭୂମିରେ ବହୁତ ପ୍ରକାର ଫସଲ କରି ୧୦।୧୫ ପ୍ରାଣୀ ପୋଷି ହେଉଥିବା ଦୃଷ୍ଟାନ୍ତ ବହୁସ୍ଥାନରୁ ସନ୍ଧାନ ହେଇ ଅଛି ।

ବହୁତ ଭୂମି ଚାଷ କରି କୃଷକ ବର୍ଷକେ ୬ ମାସ ଖାଦ୍ୟ ପାଏ ନାହିଁ । ଏଥିର ଅନେକ କାରଣ ଅଛି । ପ୍ରଧାନତଃ ଗୋଟିଏ କଥା ସମସ୍ତେ ଜାଣନ୍ତି—କୃଷକ ବର୍ଷ ତମାମ ଜମି ଉଠିଆରେ ଲାଗେ ନାହିଁ । ଭାରତ-ବର୍ଷରେ ଅନେକ ସ୍ଥାନରେ କୃଷକମାନେ ଭାରି ଶ୍ରମ ନେଇ ବର୍ଷ ତମାମ କ୍ଷେତ କାମରେ ଅବଶ୍ୟ ମନ ଦିଅନ୍ତି । କିନ୍ତୁ ବହୁ ସଂଖ୍ୟକ କୃଷକ କଥା ଭାଳିବସିଲେ, ଏତିକ କହିବାକୁ ହେବ—ସେମାନେ ପ୍ରଧାନ ଫସଲ ଯଥା—ଧାନ, ଗହମ, ମୁଗ ଭଳି କେତୋଟି ଶସ୍ୟ ଉତ୍ପନ୍ନ କରିଦେବା ପରେ ବର୍ଷକେ ପ୍ରାୟ ପାଞ୍ଚ ମାସ ପର୍ଯ୍ୟନ୍ତ ବସି ରହନ୍ତି । ସେ ସମୟରେ ପିଆଜ, ରସୁଣ, ମଳା ଚଲୁ, କାକୁଡ଼ୀ, ମରିଚ, ଜହ୍ନି ପ୍ରଭୃତି ଚାଷ କରୁଥିଲେ, ସେଥିପାଇଁ ସେମାନଙ୍କର ଚିନ୍ତା ଆଉ ରହନ୍ତାନାହିଁ । ଆଳସ୍ୟଦୋଷରୁ ହେଉ ବା ଯେ କୌଣସି ଅମୂଳକ ବିଶ୍ୱାସ ଦୋଷରୁ ହେଉ ସେମାନେ ତାହା କରନ୍ତିନାହିଁ । ସେ ସମୟରେ ଯେ କୌଣସି ଛୋଟ ବ୍ୟବସାୟ ଅବା କରନ୍ତେ, ତାହା ମଧ୍ୟ ବହୁ ସ୍ଥାନରେ ହୁଏ ନାହିଁ । କାଠ, ବାଉଁଶଆଳୁ, ଆମ୍ବ ଏପରି ଯେଉଁ ସ୍ଥାନରେ ଯାହା ଘଟେ, ତାହା ଅନ୍ୟ ସ୍ଥାନକୁ ନେଇ ବିକାକଣା କରୁଥିଲେ, କୃଷକମାନେ ନିଜେ ନିଜେ ପୋଷି ହେବାପାଇଁ ଆଉ କଷ୍ଟ ହୁଅନ୍ତା ନାହିଁ । ଓଡ଼ିଶା କୃଷି ବିଭାଗର ଡିରେକ୍ଟର କହିଥିଲେ—ବିହାର ଅପେକ୍ଷା ଓଡ଼ିଶା କୃଷକ ସମଧିକ ଶ୍ରମ ସହିଷ୍ଣୁ, ଅଧିକ ବୁଦ୍ଧିମାନ୍ ସତ, କିନ୍ତୁ ଓଡ଼ିଆ କୃଷକ ତ ଓଳିଏ ଖାଇ ଓଳିଏ ପ୍ରାୟଶଃ ଉପବାସ ରହେ । ଓଡ଼ିଆ କୃଷକ ସ୍ୱଭାବତଃ ଶ୍ରମବିମୁଖ ନୁହେ; ତାହାର କେତେଗୁଡ଼ିଏ ଅମୂଳକ ଅନ୍ଧ ବିଶ୍ୱାସ ରହିଅଛି । ସେ ଗୁଡ଼ିଏ ଶୀଘ୍ର ଦୂର ନ ହେଲେ ତାହାର ଅବସ୍ଥା ଆଶାନୁରୂପ ସ୍ୱଚ୍ଛଳହେବା ବିଡମ୍ବନା ।

୧୦ । ଗଣ୍ଡବେଜ୍ଜଷା—ଯେଉଁ ଫଳାରୁ କୃଷକ ବେଶ୍ ପରିମାଣରେ ଲାଭ ପାଇବା ସମ୍ଭାବନା, ତାହା ସେ 'ଗଣ୍ଡବେଜ୍ଜଷା' ବୋଲି ଛାଡ଼ିଥାଏ । ପିଆଜ, ରସୁଣ, ମୂଳା, ଛଣି, ହଳଦୀ, ଲାଉ ପ୍ରଭୃତି ଚାଷ ଗଣ୍ଡବେଜ୍ଜଷା ବୋଲି କୃଷକର ଛାଡ଼; କଦଳୀ, ନଡ଼ିଆ, ଗୁଆ ପ୍ରଭୃତିରେ ମଧ୍ୟ କୃଷକ ହାତ ଦିଏ ନାହିଁ । ଅଖୁ ଗଣ୍ଡବେଜ୍ଜଷା ବୋଲି ମଧ୍ୟ ଅନେକ ଦନଯାଏ ଛାଡ଼ି ଦିଅ ଯାଉଥିଲା । ଏଣିକି ଏଣିକି ଅନେକ ସ୍ଥାନରେ ତାହା ହୁଏ । ଆଳସ୍ୟବଶତଃ କୃଷକ ଯେ ଏଥିରେ ହାତ ଦିଏ ନାହିଁ, ତାହା ନୁହେ, କେବଳ "ଗଣ୍ଡବେଜ୍ଜଷା" ଭୟରୁ ମାତ୍ର । ଏହି ବିଶ୍ୱାସଟା କୃଷକ ହୃଦୟରୁ ଶୀଘ୍ର ଅପସାରିତ ହେବା କଠିନ । କୃଷକର ୫ । ୬ଟି ପ୍ରାଣୀଙ୍କ ମଧ୍ୟରୁ କାହାର ହେଲେ ଜ୍ୱର ଅଜୀର୍ଣ୍ଣ ପ୍ରଭୃତି ହେଲେ, କୌଣସି ବୁଢ଼ା ବୁଢ଼ୀ, ପିଲାର ଦୈବାତ୍ ମୃତ୍ୟୁ ଘଟିଗଲେ, ବା କୌଣସି ବ୍ୟବସାୟରେ ନଷ୍ଟ ହେଲେ. ନତୁବା କୌଣସି ମକଦ୍ଦମାରେ ପରାଜୟ ହେଲେ ସେ ଭାବେ ଅମୁକ ପିଆଜ, ଛଣପଟ ବା କଦଳୀ ଚାଷ କରି ଥିବାରୁ ସେପରି ହେଲା । କୃଷକ ଅମୁକ ଅମୁକ ବେଜ୍ଜଷାରେ ହାତ ଦେଇ ନ ଥିଲେ ମଧ୍ୟ କୌଣସି ବ୍ୟକ୍ତି କରିଥିବା ଉକ୍ତ ଶସ୍ୟରତେର ଘରଆଡ଼େ ଆସିବାରୁ ତାହା ହେଲା ବୋଲି ତାହାର ଧାରଣା ଜନ୍ମିଯାଏ । ଏପରି ନାନା ଅସମ୍ଭବ ଭାବନାସ୍ରୋତରେ କୃଷକ ବଗୃର ପହଁର ହେଉଥାଏ । ପ୍ରଧାନତଃ ଗଞ୍ଜାମ ଜିଲ୍ଲାର ଅଧିକାଂଶ ସ୍ଥାନରେ ଏହି "ଗଣ୍ଡବେଜ୍ଜଷା" ଭୟଟା ଅଛି । ତେବେ କୃଷକଙ୍କ ଦୁର୍ଯୋଗରୁ ଏପରି ଭୟଟାଏ ଜାତ ହେଲା କାହିଁକି ? ଏ ଅଞ୍ଚଳର ଆଦିମ ଅଧିବାସୀଙ୍କ ମଧ୍ୟରୁ ଗଣ୍ଡମାନେ କନ୍ଧଙ୍କ ପରି ପ୍ରଧାନ । ହିନ୍ଦୁମାନେ ଏହାଙ୍କୁ ଅସ୍ପୃଶ୍ୟ କରି ରଖିଥିଲେ, ରଖୁଛନ୍ତି । ସେମାନେ ତ ଜାତି ଅସ୍ପୃଶ୍ୟ, ସେମାନେ କରିବା ଫଳ ମଧ୍ୟ ହେତୁଭଳି ନୀଚ ପରିତ୍ୟାଜ୍ୟ ବିବେଚିତ ହେଲା ।

ଅତଏବ ଗଣ୍ଡମାନେ ଯେଉଁ ଯେଉଁ ଗୃହ କରୁଥିଲେ, ସେ ସମସ୍ତ 'ଗଣ୍ଡବେଢ଼ଷା' ବୋଲି ଆଜ ପର୍ଯ୍ୟନ୍ତ ଲୁଦାଯୋଉ ଅଛି । ବର୍ତ୍ତମାନ ସେମାନେ ବିଶେଷ ଭାବରେ ହାଳଦୀ କରନ୍ତି, ସେହି ହେତୁ ହାଳଦୀ ଫନ୍ଦାରେ ହାତ ଦେବା ପାଇଁ କୃଷକ ବିଶେଷ ଭାବରେ ଅମଙ୍ଗ । ଅବି-ବର୍ତ୍ତାସଜନିତ 'ଗଣ୍ଡବେଢ଼ଷା' ଭୟରୁ କୃଷକ ରକ୍ଷା ପାଇବା ପାଇଁ ଅନ୍ୟ ଉପାୟ ନାହିଁ, ଏକମାତ୍ର ଉପାୟ—ଉପଯୁକ୍ତ ଶିକ୍ଷା ।

୧୧ । ଉତ୍ପନ୍ନ ଦ୍ରବ୍ୟର ଅଯଥା ବିକ୍ରୟ—କୃଷକ ଯାହା ନିତାନ୍ତ ଆବଶ୍ୟକୀୟ ଜିନିଷ ବୋଲି କିଣେ, ତାହା ଠିକ୍ ଦରରେ କ୍ରୟ କରି ପାରେ ନାହିଁ । ନିଜର ଉତ୍ପନ୍ନ ଦ୍ରବ୍ୟକୁ କ୍ରେୟ କରେ ଶସ୍ତାରେ । ବେପାରୀଙ୍କ କୌଶଳ, 'ଜଲ୍ଲରୀ'ଙ୍କ ଫିକର ଯୋଗୁଁ କୃଷକର ଟଙ୍କାଟା ୧୬ । ୧୦ ଅଣା ହୁଏ । ସେହି କାରଣରୁ କୃଷକର କ୍ରୟ ବିକ୍ରୟ ପାଇଁ ସମବାୟ ସମିତି ସାହାଯ୍ୟ କରିଥାଏ । ଏ ଅଞ୍ଚଳରେ ସେହି ସୁବିଧା ତେତେ ନାହିଁ, ଯଥେଷ୍ଟ ପରିମାଣରେ ସମବାୟ ସମିତି ସ୍ଥାପନ ହୋଇ ପାରିଲେ, କୃଷକ-ମାନେ ବୃଥା କ୍ଷତିରୁ ରକ୍ଷା ପାଇବେ ।

୧୨ । ଗୋଚର ଭୂମିର ଅଭାବ—ଗୋରୁ, ଗାଈ, ପୋଢ଼ କୃଷକର ପ୍ରଧାନ ସମ୍ବଳ । କିନ୍ତୁ ଗୋଚର ଭୂମି ଦିନକୁ ଦିନ ସରି ଯାଉଛି ।

"Owing to the encroachment of cultivation on the grazing areas well-bred cattle areas are becoming scarce."

ଗୋଚର ଭୂମି ରୟତମାନେ ପଟ୍ଟା କରିଯାଉ ଥିବାରୁ ସବଳ ପଶୁ ସ୍ୱଳ୍ପ ହେଲଣି । ପଞ୍ଜାବ, ରାଜପୁତାନା, ନେଲ୍ଲୋର, ଅମୃତ ମହଲ, ଗୁଜରାଟ, ସିନ୍ଧ, ବାଥିଆବାରରେ ପଶୁପକ୍ଷ ବୃଦ୍ଧି ହୁଏ । ମଧ୍ୟଭାରତ, ଦକ୍ଷିଣ ଭାରତରେ

ଗୋଚର ଭୂମି ଥିବାରୁ ପଶୁପକ୍ଷ ସବଳ ରହନ୍ତି । ଏହି ଏହି ଅଞ୍ଚଳରେ ପଶୁ ବେପାରୀମାନେ ପଶୁପକ୍ଷ ଅଭିବୃଦ୍ଧି ର ଅବଶ୍ୟ ସୁବିଧା କରି ନିଅନ୍ତି । ଅଧିକାଂଶ ସ୍ଥଳରେ ଉଦ୍‌ଯୃତ ତଥା କୃଷକମାନେ କେବଳ ଗୋଚର ଭୂମି ଅକ୍ରମଣ କରିବାକୁ ଯାଇ ପଶୁଙ୍କୁ କଷ୍ଟ ଦେଇଥାନ୍ତି । ଶତାଧିକ ଠେଙ୍ଗାର ପଶୁ ଅଳ୍ପ ଦିନରେ କଙ୍କାଳ ବିଶିଷ୍ଟ ହଡ଼ା ହୋଇ ପଡ଼େ । କୃଷକ ବାଗ୍ୟ ଶେଷରେ ୫୬ । ୩ ରେ ପାଣ ପଠାଣଙ୍କୁ ଦେଇଥାଏ । ଏଥିଦ୍ୱାରା କୃଷକର କ ଯୋର ଷତି ହୁଏ, କହିବା ଅନାବଶ୍ୟକ । ପଶୁକୁଳର ଉନ୍ନତି ଉପରେ କୃଷକର ଉନ୍ନତି—ଏହିକଥା ସ୍ମରଣରଖି କୃଷକମାନେ ଯଦ୍ୟପି କୃଷକ ସମିତି ଗାଁ ଗାଁକେ ସ୍ଥାପନକରି ସମାଜ ପକ୍ଷରୁ ଏକ ମନରେ ପ୍ରସ୍ତାବ ଅଗତ କରନ୍ତେ, ତେବେ ପ୍ରତିଗାଁରେ ପଶୁପକ୍ଷ ପାଇଁ ବିସ୍ତର ପଡ଼ିଆ ରହି ପାରନ୍ତା ।

୧୩ । ନାଟ ଜାତରେ ଅପବ୍ୟୟ—ନାଟ ଜାତରେ କୃଷକ କଂସା ବନ୍ଧା ଦେଇ ଧନ ହିଏ । ସେ ସମୟରେ ସେ ଯେଉଁ ଆନନ୍ଦ ଅନୁଭବ-କରେ ତାହା ଅତୁଳ୍ୟ । ଦର୍ଶକମାନେ ଛାତ ବାଡ଼ ଉପରେ ବସି ଗରିବ-କୃଷକର କୁଟୀର ଭାଙ୍ଗି ପକାନ୍ତି; ଅସଙ୍ଖ୍ୟ ଦର୍ଶକଙ୍କୁ ସେମାନେ ସେତେ-ବେଳେ ଚର୍ଚ୍ଚା କରିବାରେ ବିଶେଷ ଧନ ମଧ୍ୟ ବ୍ୟୟ ହୋଇଥାଏ । ନାଟଜାତ ଯୋଗୁଁ ବହୁସ୍ଥାନରେ ମତଭେଦ ଦ୍ୱାରା ଦୁଇବାଡ଼ର ସୃଷ୍ଟି ହୁଏ । ଫଳତଃ ବହୁ ବର୍ଷବ୍ୟାପୀ ଘର ପୋଡ଼ି, ଖନ ନଷ୍ଟି, ମକଦମା ପ୍ରଭୃତିରେ ଧନ, ପ୍ରାଣ, ସମୟ, ଶ୍ରମ ନଷ୍ଟ ହେଉଥିଲେ ମଧ୍ୟ ତାହା ଅଶିକ୍ଷିତ ବ୍ୟକ୍ତିଙ୍କ ହୃଦୟ ଅନ୍ତର ସ୍ପର୍ଶ କରି ପାରେ ନାହିଁ । ଗାଁ ଦେବ ଦେବୀ ତ ପ୍ରତି ବର୍ଷ ଉଥ ଚୂଡ଼ା ହେବେ, ଜାତ ନ ହେବ କପରି ? ନାଟ ଜାତର ତାହାହିଁ ଏ ଗୋଟିଏ କାରଣ । ଏଭଳି ଅଟଳ ଧର୍ମ ଧାରଣା ଥିଲା ନାଟଜାତ ବନ୍ଦ କରିବା ସହଜ ନୁହେ । ତଥାପି ଗାଁ ଭାଗବତ ଅଖଡ଼ା, ପାଠାଗାର

ସଙ୍ଘ ପକ୍ଷରୁ ପ୍ରକୃତ ଉଦ୍ୟମ ଦେଖାଗଲେ, ଲୋକେ ନାହିଁ ତାହାର ଅପକାରିତା ସହଜରେ ବୁଝନ୍ତେ । ଲୋକଙ୍କ ଧନ, ମନ,ଶ୍ରମର ଏତେଦୂର ଅପଚୟ ଘଟନ୍ତା ନାହିଁ ।

୧୪ । ପୁରୋହିତ, ଗୁରୁ, ଓକିଲ—ଏମାନେ ହୁଅନ୍ତି ସବୁମାରି-କୃଷକ-ଲଢ଼କା-ମୂଳର ଗୋଟିଏ ଗୋଟିଏ ଅଜାଷ୍ଟୁକାଟି କୀଟାଣୁ । ପୁରୋହିତ ପୂରର ହିତ କରିବା ଦୂରେ ଥାଉ ନାନାବିଧ ଭ୍ରାନ୍ତ ଧାରଣା ଲୋକଙ୍କ ହୃଦୟରେ ଜାଗ୍ରତ କରି ପଇସା ପାଇବା କୌଶଳ କରି ଥାଏ । ପୁରୋ-ହିତଙ୍କ ମଧ୍ୟରୁ ଅଧିକାଂଶ ଅଶିକ୍ଷିତ । ସେମାନେ କେବଳ ସଂସ୍କୃତ ଗ୍ରନ୍ଥ-ପଦ କଦର୍ଥ୍ୟ ଭାବରେ ମୁଖସ୍ଥ କରି ଭଣ୍ଡତା-ପସରା ମେଲି ବସନ୍ତି । ଅମୁକ ଲୋକ ମଲା, ଦିଅ ଦାନ; ଅମୁକ ଲୋକ ବ୍ୟାଧିଗ୍ରସ୍ତ, କର ପ୍ରାୟ-ଶ୍ଚିତ୍ତ; ଶ୍ରାଦ୍ଧ ହେଲା, ରଖ ଗୃହଳ; ହୋମ ହେଲା, ରଖ ଚଣ୍ଡି । ଦାନ ପ୍ରାୟଶ୍ଚିତ୍ତ ପ୍ରଭୃତି ଅବଶ୍ୟ ମନ୍ଦ ନୁହେ, ତଥାପି ସୁପାତ୍ରରେ ଦାନ ଦିଆ ଗଲେ ତ ହୁଏ । ପୁରୋହିତଙ୍କ ଭାଇ, ପୁଅ, ପୁତୁରା, ବନ୍ଧୁ ବର୍ଗଙ୍କ ମଧ୍ୟରୁ ପଣେ ଜମା ହୋଇ କୃଷକ ବିଚରାର ପ୍ରାଣ ନେଲେ ଫଳ କ'ଣ ? ଆଉ ଗୁରୁ ! ଗୁରୁଙ୍କଠାରେ ଗୁଣର ସତ୍ତା ପ୍ରାୟଶଃ ନ ଥାଏ । ବାପା ଗୋସାଇଁ ବାପା ଏପରି କ ୫ । ୭ ପୁରୁଷରୁ ଅମୁକ ମିଶ୍ରବଂଶ ଆମର ଗୁରୁ ପରା, ତାଙ୍କର ଯେ ଥାଉ, ଗୁଣ ଗ୍ରାମ ଯାହା ହେଉ ମନ୍ତ୍ର ଗ୍ରହଣ କର । ମନ୍ତ୍ର କ'ଣ, ମନ୍ତ୍ର ଗ୍ରହଣର ଉଦ୍ଦେଶ୍ୟ ପରୁରେ କିଏ ? ଲୋକ ନିନ୍ଦାରୁ ପାର ହେଲେ ହେଲା । ଲୋକଙ୍କର ଏଭଳି ବିଶ୍ୱାସ, ଲୋକଙ୍କ ବିଶ୍ୱର ବିଶ୍ୱାସ ଅନୁସାରେ ମଧ୍ୟ ଗୁରୁ ! ସେ ଗୁରୁ ଯେତେ ଅସଙ୍ଗତ ଅସମ୍ଭବ କଥା ବଖାଣି ବସନ୍ତି, ସେ ସବୁ ଲୋକଙ୍କ ଶିରୋଧାର୍ଯ୍ୟ ହୋଇଥାଏ । ଆଜି ଗୁରୁଙ୍କ ଆଦେଶ ଅମୁକ ଫସଲ କରାଯିବ ନାହିଁ, ଅମୁକଠାରେ କୂଅ ଖୋଳା ଯିବନାହିଁ, ଅମୁକ ବିଦ୍ୟା ପଢ଼ା ଯିବନାହିଁ, ତେବେ ଶିଷ୍ୟମାନେ

କାରଣ ବୁଝନ୍ତୁ ବା ନ ବୁଝନ୍ତୁ ଗୁରୁଙ୍କ କଥା ଅନ୍ୟଥା କରନ୍ତି ନାହିଁ, ଫଳ ଶୋଚନୀୟ ହୁଏ । ଫେରେ ଓକିଲ ! ସେ ତ ଆମର ହୁଅନ୍ତି ନିଜ ଲୋକ, ଆମର କ'ଣ ସେ ଅହିତ କଥା କହିବେ ! ଅମୁକ ଲୋକ ଗାଳି ଦେଲା, ଦଶ ପାଞ୍ଚ ହଜାର ଉଡ଼ିଯାଉ, ଖାଲି ରହୁ କଥାଟା । ଲୋକେ ଯେତେ ଅସମ୍ଭବ କେସ୍ ପକାନ୍ତୁ, ଓକିଲଙ୍କ ଦୃଷ୍ଟିରେ ସବୁ ସମ୍ଭବପର, ଯୁକ୍ତିଯୁକ୍ତ । ପଇସା ଦେବ କିଏ, ବାକ୍ୟବ୍ୟୟ ପାଇଁ ଭୟ କ'ଣ ? ଆମେ ସେହି ହେତୁ କହୁଁ—ପୁରୋହିତ, ଗୁରୁ, ଓକିଲଙ୍କ ଯୋଗୁଁ ବହୁ କୃଷକଙ୍କ ଅବସ୍ଥା ଶୋଚନୀୟ ହୁଏ । ଏମାନଙ୍କ ସହିତ କୃଷକଙ୍କର ଯେତେ ଦୂର ଅଳ୍ପ ସମ୍ପର୍କ ରହେ, ସେତେ ଭଲ ।

୧୫ । ବିକ୍ଷିପ୍ତ ଭାବରେ ଭୂମି—ଏକ ଚକରେ ଭୂମି କୃଷକ ଅଦୃଷ୍ଟକୁ ହାବୋଡ଼ିଲେ ସୁବିଧା କଥା । ତଥାପି କୃଷକ ସେ ଭଲ ପାଇପାରେ ନାହିଁ । ଯେପରି ବିକ୍ଷିପ୍ତ ଭାବରେ ଖଣ୍ଡେ ଖଣ୍ଡେ ଘଟେ, ସେ ସେହି ଭଳି କ୍ରୟ କରେ ବା ଭାଗ ଚାଷକୁ ରଖିବା ପାଇଁ ବାଧ ହୁଏ । ଏଥି ଯୋଗୁଁ କୃଷକର ନାନା ଅସୁବିଧା । ଭିନ୍ନ ଭିନ୍ନ ସ୍ଥାନରେ ଥିବା ଭୂମି ପ୍ରତି ସେ ଦୃଷ୍ଟି ଦେଇ ପାରେ ନାହିଁ, ଉନ୍ନତ ଧରଣର କର୍ଷଣ ଯନ୍ତ୍ର ବ୍ୟବହାର କରିବା ଅସୁବିଧା ହୁଏ । ଏଗୁଡ଼ିକ ସବୁ ଅନିବାର୍ଯ୍ୟ କଥା । କୃଷକଙ୍କ ମଧ୍ୟରେ ଏକତା ରହି ପାରିଲେ ଏହି ଧରଣର ଅସୁବିଧା ଅନେକ ଦୂର ଲାଘବ ହେବା ସମ୍ଭାବନା ।

୧୬ । ଶିକ୍ଷାର ଅଭାବ—କୃଷି ପାଇଁ ଶିକ୍ଷା ଆବଶ୍ୟକ ନାହିଁ ବୋଲି କୃଷକର ଧାରଣା । କୃଷି କାର୍ଯ୍ୟ ପାଇଁ କୃଷକର ନିତାନ୍ତ ଆବଶ୍ୟକୀୟ ଜ୍ଞାନ ଅବଶ୍ୟ ଅଛି । ତଥାପି ଉନ୍ନତ ଯୁଗରେ ଉନ୍ନତ ଧରଣର କୃଷି କାର୍ଯ୍ୟ ନ ଚଳିଲେ ପ୍ରତିଯୋଗିତା କ୍ଷେତ୍ରରେ ଘୋର ଅସୁବିଧାର ଆଶଙ୍କା ଅଛି । ସୁତରାଂ ସେହି ଧରଣର ଉନ୍ନତ କୃଷି କାର୍ଯ୍ୟ ଚଳାଇବା ପାଇଁ ଶିକ୍ଷା ଆବଶ୍ୟକ ।

The Indian Agriculturist, as a rule possesses an intimate knowledge of the essentials of his own business and fails through lack of ways and means''

ଭାରତୀୟ କୃଷକ ନିଜ ବ୍ୟବସାୟର ସୂକ୍ଷ୍ମତତ୍ତ୍ୱଗୁଡ଼ିକ ଭଲ ଜାଣେ, କିନ୍ତୁ ନିଧି ଅଭାବରୁ ତ ବୁଦ୍ଧି ନ ଦଶିବା କଥା, ସେହି ହେତୁ ସେ ପଦେ ପଦେ ଅପଦସ୍ଥ ।

୧୭ । ସହଯୋଗିତାର ଅଭାବ—ଜଗତ ନାନା ବିଧ ବସ୍ତୁରେ ପରିପୂର୍ଣ୍ଣ । କିନ୍ତୁ ଗୋଟିଏ ଅନ୍ୟଠାରୁ ବିଚ୍ଛିନ୍ନ ନୁହେ । ଭିନ୍ନ, ବିଚ୍ଛିନ୍ନ ବୋଲି ଲୋକଙ୍କ ହୃଦୟରେ ଭ୍ରାନ୍ତ ଧାରଣା ଜନ୍ମି ଯାଏ ମାତ୍ର । ମନୁଷ୍ୟ, ପଶୁ, ବୃକ୍ଷ, ଆକାଶ, ଜଳ, ବାୟୁ, ଚନ୍ଦ୍ର, ସୂର୍ଯ୍ୟ ଯାହା ବୋଲ ସମସ୍ତେ ପରସ୍ପର ସମ୍ବନ୍ଧ ବିଶିଷ୍ଟ । ବୃକ୍ଷରୋପଣ ପାଇଁ ମନୁଷ୍ୟ, ପଶୁ, ଜଳ, ବାୟୁ, ଚନ୍ଦ୍ର, ସୂର୍ଯ୍ୟ ସମସ୍ତଙ୍କ ସାହାଯ୍ୟ ଲୋଡ଼ା । ଯେ କୌଣସି ଗୋଟି-କର ସମ୍ବନ୍ଧ କ୍ଷଣକ ପାଇଁ ହେଉ ଯଦ୍ୟପି ଛିନ୍ନ ହୁଅନ୍ତା, ତେବେ ଜଗତରେ ଘୋର ବିଶୃଙ୍ଖଳା ଦେଖା ଯାନ୍ତା । ସୃଷ୍ଟି ଯେଉଁ ଆକାରରେ ଦେଖାଯାଏ, ଆଉ ତାହା ସେହିଭାବରେ ଦେଖାଯାନ୍ତା ନାହିଁ ; ବାଲୁକା-ମୟ ହୁଅନ୍ତା ବା ଜଳାର୍ଣ୍ଣବ ଦେଖା ଯାନ୍ତା । ଜଡ଼, ପ୍ରାଣୀ, ସୌର-ଜଗତରେ ସେଇ ଏକ କଥା । ତେବେ ମନୁଷ୍ୟ ମନୁଷ୍ୟ ମଧ୍ୟରେ କ'ଣ ସମ୍ବନ୍ଧ ନାହିଁ ? ସମସ୍ତେ ପରସ୍ପର ସଂବଦ୍ଧ ଉଚ୍ଚ, ନୀଚ, ଭେଦଭାବର ପ୍ରଶ୍ରୟ ନାହିଁ—ଏଇତକ ମନୁଷ୍ୟ ବୁଝି ପାରୁ ଥିଲେ ତାହାର ପ୍ରତ୍ୟେକ ଅଭାବ ଆପେ ଆପେ ଦୂର ହୁଅନ୍ତା । ଛୋଟ ଗାଁ ଗୋଟିକରେ ଜାତି ଘେନି ଭେଦଭାବ, ଶିକ୍ଷିତ ଅଶିକ୍ଷିତ ମଧ୍ୟରେ ମତଭେଦକ ନାଠ ଜାତ ହେଲେ ଅମଙ୍ଗଳ ଦେଖାଯାଏ । ଏଇ କାରଣରୁ କୃଷକର କାର୍ଯ୍ୟ ଭଲ ଚଳେ

ନାହିଁ । ୫ ଟଙ୍କା ଠାରେ ୨୫ ଟଙ୍କା ବ୍ୟୟ ହୁଏ । କୃଷକଙ୍କ ମଧ୍ୟରେ ସର୍ବଦା ଅତ୍ୟନ୍ତ ସହଯୋଗିତା ଆବଶ୍ୟକ । ତାହା ହେଲେ ଗୋଟିଏ ହଳ ନିଜର ଥିଲେ ମଧ୍ୟ ଅସମୟରେ ଅନ୍ୟାନ୍ୟ ଅନେକ ହଳ ଜମା ହୋଇ ପାରିବ । ଉତ୍ପନ୍ନ ଦ୍ରବ୍ୟ ବିକ୍ରିବେଳେ ପ୍ରତିଯୋଗିତା ରହିବ ନାହିଁ, ବହୁ ମୂଲ୍ୟର ହାତ-ହତିଆର ଗୋଟିକରେ ଅନେକ ଲୋକର କାର୍ଯ୍ୟ ତୁଟିବ ଇତ୍ୟାଦି ।

## ସହଯୋଗ ଋଣ ସମିତି ୩

"Co-operation is the only form of organization open to agriculturists and is essential if the cultivators are to get the best out of their hɔldings."

କୃଷକ ଦରିଦ୍ର କାହିଁକି ? ଏ ପ୍ରଶ୍ନର ଉତ୍ତର ପୂର୍ବ ପ୍ରସଙ୍ଗରେ ସଂକ୍ଷିପ୍ତଭାବରେ ଆଲୋଚନା କରାଗଲା । କୃଷକର ସେଥି ପ୍ରତି ଦୃଷ୍ଟି ନାହିଁ । ଚିନ୍ତା ଥିଲେ ସେ ପ୍ରତିକାରର ଉପାୟ ଖୋଜନ୍ତା, ପ୍ରତିକାର କରିବା ପାଇଁ ଅନ୍ୟକୁ କହନ୍ତା । ଦାରିଦ୍ର୍ୟ ଦୁଃଖଟା ତାହାର ଏତେ ଦୂର ସୁହା ହୋଇ ପଡ଼ିଲାଣି ଯେ, ସେ ଭାବେ—'କର୍ମର ଦୋଷ', 'ଅଦୃଷ୍ଟ ଲିଖନ, କେ କରିବ ଆନ' । ଏହି ଯୁକ୍ତି ଟିକକରେ ତାହାର ଅଖଣ୍ଡ ଶାନ୍ତି ରହିଅଛି; ତାକୁ ଅତି ଅଥୟ, ଅଶାନ୍ତ ଭାବରେ କାଳ କାଟିବାକୁ ପଡ଼େ ନାହିଁ । କିନ୍ତୁ କୃଷକଙ୍କ ଦୁରବସ୍ଥା ଦେଖି ଦେଖି ପ୍ରତ୍ୟେକ ଚିନ୍ତାଶୀଳ ଦେଶହିତୈଷୀ ଚିନ୍ତିତ । ସେହି ଚିନ୍ତାର ଫଳରେ ଦେଶରେ ନାନା କୃଷକ-ହିତକର ଉଦ୍ୟମ ଚାଲିଅଛି । ତନ୍ମଧ୍ୟରୁ ଅତି ପ୍ରଧାନ ଅନୁଷ୍ଠାନ—'ସହ-ଯୋଗ ଋଣ ସମିତି' ।

ଏକ ସମୟରେ ଭାରତୀୟ କୃଷକ ପରି ପାଶ୍ଚାତ୍ୟ ଦେଶୀୟ କୃଷକ-ମାନେ ଦରିଦ୍ର ଥିଲେ । ନାନା ପ୍ରସଙ୍ଗରୁ ଜଣାଯାଏ, ସେମାନଙ୍କ ଅବସ୍ଥା ସମ୍ଭବତଃ ଅଧିକ ଶୋଚନୀୟ ଥିଲା । ସେମାନଙ୍କ ଅବସ୍ଥା ଭଲ କରିବା ପାଇଁ ଚିନ୍ତା କରୁ କରୁ ସର୍ବପ୍ରଥମେ ସମବାୟ ଋଣ ସମିତି ଦ୍ୱାରା କୃଷକମାନଙ୍କ ଦୁରବସ୍ଥା ଦୂରହେବା ଭାବ ରାଇଫେସନଙ୍କୁ ସ୍ପର୍ଶ କଲା । ରାଇଫେସନ୍ ଜରମାନର ଲୋକ । ସେ ଜରମାନର ଗୋଟିଏ କ୍ଷୁଦ୍ର ପଲ୍ଲୀରେ ସମବାୟ ଋଣ ସମିତି ପ୍ରଥମେ ସ୍ଥାପନ କରି ଥିଲେ । ସେ ଯେଉଁ ପ୍ରଣାଳୀ ଗୁଡ଼ିକ ସମିତି ପରିଚାଳନା ପାଇଁ ପ୍ରଣୟନ କରିଥିଲେ, ତାହା ଆଜି ସମଗ୍ର ଜଗତରେ ଦେଶ କାଳାନୁଯାୟୀ କିଞ୍ଚିତ ପରିବର୍ତ୍ତିତ ଆକାରରେ ଚଳି ଆସୁଅଛି । ରାଇଫେସନଙ୍କ ଋଣଦାନ ସମିତି କୃଷକ କୁଳରେ ଏପରି ଅଦ୍ଭୁତ ଭାବରେ ହିତକର ହେଲା ଯେ, ଅଳ୍ପଦିନ ମଧ୍ୟରେ ଜରମାନର ସମସ୍ତ ଅଞ୍ଚଳରେ, ଅନ୍ୟ ଦେଶର ପ୍ରତି ଗାଁରେ ବିଦ୍ୟୁତ୍ ବେଗରେ ବ୍ୟାପିଗଲା ।

ଅନ୍ୟାନ୍ୟ ଦେଶ ତୁଳନାରେ ଭାରତରେ ବର୍ତ୍ତମାନ ଏକତା ତଥା ସହଯୋଗିତା ନାହିଁ କହିଲେ ଚଳେ । ତଥାପି ଗାଁ କୋଠ ଟୋକିଡ଼ି, ଜଗାଳି, ଭଣ୍ଡାରି, ଧୋବା ନିଯୁକ୍ତିରେ, ଭାଗବତ ମେଳାରେ, ଦେବାଳୟ ଆରତି ଘଣ୍ଟା ବେଳେ, ଲୋକଙ୍କ ଆଗମନ ଏବଂ ପ୍ରାର୍ଥନାରେ, ପର୍ବ-ପର୍ବାଣିରେ, ଗାଁ ଜନ୍ମାଳ ଭୋଜି ଭାତରେ, ଚନ୍ଦନ ଆଉ ଦୋଳପୂର୍ଣ୍ଣିମା ଉତ୍ସବମାନଙ୍କରେ, ଆଖୁ ପେଡ଼ାରେ ଲୋକଙ୍କ ମଧ୍ୟରେ ଯେଉଁ ଟିକିଏ ସହଯୋଗିତା ମିଳାମିଶା ରହିଅଛି, ସେତିକି ମଧ୍ୟ ଏକ ସମୟରେ ହାଲଣ୍ଡ, ବେଲଜିୟମ୍, ଜର୍ମାନୀ, ଅଷ୍ଟ୍ରିୟା, ଇଟାଲୀ, ସୁଇଜରଲାଣ୍ଡ, ଫିନ୍‌ଲାଣ୍ଡରେ ଆଦୌ ନ ଥିଲା । ସେ ଦେଶ କୃଷକଙ୍କ ମଧ୍ୟରେ ଯେ କୌଣସି ଉପାୟରେ ଅଖଣ୍ଡ ସହଯୋଗିତା ରହିବ, ସେମାନେ ଧନୀ ଏବଂ ଆଦର୍ଶ ସ୍ଥାନୀୟ ହେବେ

ବୋଲି କେହି ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ । ନିକଲସନଙ୍କ ସହଯୋଗ ଋଣଦାନ ସମିତି ଯୋଗୁଁ ସେମାନଙ୍କ ଅବସ୍ଥା ବଦଳିଲା । ସେମାନେ ଆଜି ଧନୀ, ଶିକ୍ଷିତ, ଉନ୍ନତ ଏବଂ ଆଦର୍ଶ ସ୍ଥାନୀୟ । ଭାରତୀୟ କୃଷକକୁଳର ଚିର-ହାହାକାରମୟ ବ୍ୟାକୁଳ ବେଦନା ପ୍ରତି ଏତେ ଦିନ ଉତ୍ତାରେ ଭଗବାନଙ୍କ ଦୃଷ୍ଟି ଆସି ପଡ଼ିଲାଣି ।

"The co-operative movement in India owes its birth to the co-operative societies Act of 1904 passed during the viceroyalty of Lord Curzon."
ଖ୍ରୀ ୧୯୦୪ ଷ୍ଟାବ୍ଦରେ ଲର୍ଡ଼ କର୍ଜ଼ନଙ୍କ ସମୟରେ 'ସମବାୟ ଋଣ ସମିତି' ଭଗବାନଙ୍କ ମହାଦାନ ସ୍ୱରୂପ ସର୍ବପ୍ରଥମେ ଭାରତରେ ପ୍ରବେଶ କରିଅଛି ।

It was primarily meant for the benefit of the agricultural class whom it sought to relieve of the terrible burden of the debt under which it groaned.

Forward

କୃଷକ କୁଳକୁ ନିଷ୍ଠୁର ଦାଦନକାରଙ୍କ ହସ୍ତରୁ ରକ୍ଷା କରିବା ସମବାୟ ଋଣ ସମିତିର ପ୍ରାଥମିକ ଉଦ୍ଦେଶ୍ୟ । ୧୯୦୪ର ସମବାୟ ଋଣ ସମିତିର ପଦ୍ଧତି ଅନୁସାରେ କୃଷକ ବ୍ୟତୀତ ଅନ୍ୟ କେହି ଧନ ଜମା ଦେବା ପାଇଁ ସୁବିଧା ନ ଥିଲା । କୃଷକଙ୍କ ମଧ୍ୟରେ ଅନେକ ଧନୀ ଧନ କେବଳ ପୋତି ରଖିଥିବା ବିଶ୍ୱାସ ଅନେକ ଲୋକଙ୍କ ହୃଦୟରେ ଥାଏ । ସେହି ହେତୁ ସେମାନଙ୍କ ଧନରେ ସମବାୟ ଋଣ ସମିତି ଦରିଦ୍ର କୃଷକଙ୍କ ସହାୟ ହେବ—ଏହି ଆଶା ପୋଷଣ କରାଯାଉଥିଲା । ଦଶ ବର୍ଷ ମଧ୍ୟରେ ଜଣାଗଲା ଯେ, କୃଷକମାନେ ପ୍ରାୟଶଃ ଦରିଦ୍ର । ଖ୍ରୀ ୧୯୧୨ ଷ୍ଟାବ୍ଦରେ ସମିତିର ପଦ୍ଧତି ପରିବର୍ତ୍ତନ କରି ବାହାର ଲୋକଙ୍କ ଧନ ଶତକଡ଼ା

୬ ଟଙ୍କା ସୁଧରେ ଜମା କରିବା ପାଇଁ ସୁବିଧା କରାଗଲା । ୧୯୧୨ ସଉକ ସମଗ୍ର ଭାରତବର୍ଷରେ ୧୨ଟି କେନ୍ଦ୍ର ସମିତି ଥିଲା, ସମୁଦାୟ କେନ୍ଦ୍ର-ସମିତିରେ ମୋଟ ଜମା ଧନ ଥିଲା ୨¾ କୋଟି ଟଙ୍କା । ବାହାର ଲୋକଙ୍କୁ ଧନ ଜମା ଦେବା ପାଇଁ ସୁବିଧା ମିଳିବା ପରେ, ଏପରି କି, ଦୁଇ ବର୍ଷ ମଧ୍ୟରେ କେନ୍ଦ୍ର ସମିତିର ସଂଖ୍ୟା ୧୨ରୁ ୨୮୯ ପର୍ଯ୍ୟନ୍ତ ବଢିଲା । ପ୍ରତ୍ୟେକ ବଡ ମୋଟ ସହରରେ କୃଷକମାନଙ୍କ ସୁବିଧା ପାଇଁ କେନ୍ଦ୍ର ସମିତିମାନ ସ୍ଥାପନ କରାଗଲା । ଜମା ଧନ ମଧ୍ୟ ୨¾ରୁ ୫½ କୋଟିକୁ ଉଠିଥିଲା ।

## ବର୍ତ୍ତମାନ ଅବସ୍ଥା

ଏତେବେଳ ସଉକ ସମଗ୍ର ଭାରତରେ ୮୦୦୦୦ ପର୍ଯ୍ୟନ୍ତ ସମବାୟ ସମିତି ସ୍ଥାପନ ହୋଇଅଛି । ତନ୍ମଧ୍ୟରୁ ଶତକଡ଼ା ୮୦ କୃଷକ ଋଣ ସମିତି "…their sole business is to advance loans at a low interest to the agriculturist and thus to emancipate him from the clutches of the money lenders…" ଝିକ୍ ଭଡା ସୁଧରେ ଋଣ ଦେଇ କୃଷକମାନଙ୍କୁ ସାହୁକାରଙ୍କ ହସ୍ତରୁ ଉଦ୍ଧାର କରିବା ହିଁ ଉପରୋକ୍ତ ଋଣ ସମିତି ଗୁଡ଼ିକର ଉଦ୍ଦେଶ୍ୟ । ଭାରତର ସମଗ୍ର ଜନ ସଂଖ୍ୟା ମଧ୍ୟରୁ କୃଷକଙ୍କ ସଂଖ୍ୟା ଏତେ ବେଶି ଓ ସେମାନଙ୍କ ଋଣ ଧନର ପରିମାଣ ଏତେ ଅଧିକ ଯେ, ୮୦୦୦୦ ସହଯୋଗ ସମିତି କୃଷକ କୁଳର ଦୁଃଖ ଦୂର କରିବାକୁ ଅଣ୍ଟାଇଛି ସୁଦ୍ଧା ପାରୁ ନାହାନ୍ତି । ଏତିକି ସାନ୍ତ୍ୱନା, କୃଷକଙ୍କ ଉପରେ ସାହୁକାରଙ୍କ ପୂର୍ବ ଅତ୍ୟାଚାର ତେତେ ପରିମାଣରେ ଆଉ ନାହିଁ ।

## ମୂଳ ସୂତ୍ର

ଋଣଦାନ ସମିତି କେତେ ଗୁଡ଼ିଏ ଧାରା ଧରି ଚଳି ଆସୁଅଛି । ସେ ଗୁଡ଼ିକ ସମୟୋପଯୋଗୀ କରିବା ପାଇଁ ଖଣ୍ଡନ, ମଣ୍ଡନ, ସଂଶୋଧନ,

ପରିବର୍ତ୍ତନ ବେଳେ ବେଳେ ଆବଶ୍ୟକ ହୁଏ । ମୂଳସୂତ୍ର ସ୍ଥୂଳତଃ ଏହିପରି—

ଯେଉଁ ଗ୍ରାମରେ ସମିତି ସ୍ଥାପନ ହେବ, ସେଇ ଗ୍ରାମର ଲୋକେ କେବଳ ସେଥିରୁ ଋଣ ନେବେ, ସଭ୍ୟ ହୋଇ ପାରିବେ । ଅନ୍ୟ ଗ୍ରାମର ଲୋକେ ସେଥିରୁ ଋଣ ନେଇ ପାରିବେ ନାହିଁ, ସଭ୍ୟ ହୋଇ ପାରିବେ ନାହିଁ । ସମିତି ଚଳାଇବା ଭାର ସେଇ ଗ୍ରାମର କେତେ ଜଣ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ରହିବ । ପରିଚାଳନା ପାଇଁ ସେମାନେ କୌଣସି ପ୍ରକାର ବେତନ ନେବେ ନାହିଁ । ସଭ୍ୟମାନେ ଟଙ୍କା ଋଣ ନେଇ ପାରିବେ । ସେଥିରେ ମୂଳଧନ କିଛି ରହିବ ନାହିଁ । ସମସ୍ତ ଲାଭ ଜମା ରହିବ, ବଣ୍ଟାଯିବ ନାହିଁ । କୌଣସି ସଭ୍ୟ ଋଣ ପରିଶୋଧ କରିବାକୁ ଅକ୍ଷମ ହେଲେ, ପ୍ରଥମେ ଜାମିନଦାର ଦ୍ୱିତୀୟତଃ ପଞ୍ଚାୟତଦାର, ଶେଷରେ ସମସ୍ତ ସଭ୍ୟମାନେ ଦାୟୀ ରହିବେ । ସମିତିମାନଙ୍କରେ ଧନୀ ସଭ୍ୟମାନେ ଧନ ଜମା ଦେଇ ପାରିବେ । ସର୍କାରସମ୍ପର୍କ ରହିଥିବାରୁ ଟଙ୍କା ଜମା ଦେଇଥିବା ବ୍ୟକ୍ତିଙ୍କୁ କୌଣସି ଆଶଙ୍କାର କାରଣ ନଥାଏ । କେତେ ଗୋଟି ଗ୍ରାମ୍ୟ ସମିତି ଉପରେ କେନ୍ଦ୍ର ସମିତି; କେନ୍ଦ୍ର ସମିତି ଗ୍ରାମ୍ୟ ସମିତି ଗୁଡ଼ିକର ନିୟାମକ ।

## କୃଷକଙ୍କ ସୁବିଧା

ଗାଁ ସମିତି ଗାଁ ଲୋକଙ୍କ ପାଇଁ ରହିବା କାରଣରୁ କୃଷକମାନଙ୍କୁ ଟଙ୍କା ପାଇଁ ବେଶି ଦୂର ଦୌଡ଼ିବାକୁ, ଅଧିକ ଚିନ୍ତା କରିବାକୁ ପଡ଼େ ନାହିଁ । ଯଥାସମୟରେ ଅଳ୍ପ ସୁଧରେ ଟଙ୍କା ଘଟେ । ଉତ୍ତମ ବୀଜ, ନୂତନ ଧରଣର ସାର, କୃଷି ଉପକରଣ ଆବଶ୍ୟକ ହେଲେ ସମିତି ଗାଁ କୃଷକଙ୍କ ପାଇଁ ଯୋଗାଇ ଥାଏ । କୃଷକଙ୍କ ଉତ୍ପନ୍ନ ଶସ୍ୟର ବିକ୍ରି ଭାର ସମିତି ଗ୍ରହଣ କରି ପାରେ । ତଦ୍ୱାରା ମଧ୍ୟସ୍ଥ ଲୋକେ କିଛି ଠକି ପାରନ୍ତି ନାହିଁ, ମହାଜନ-

ମାନେ ସମସ୍ତଙ୍କ ଉତ୍ପନ୍ନ ଦ୍ରବ୍ୟ ଏକା ସମୟରେ ଉଚିତ ଦରରେ ବିକ୍ରୀ ସୁବିଧା ହୁଏ ।

## ନୈତିକ ଫଳ

ଠିକ ସମୟରେ ଦେବା ନେବା ଯେ କୌଣସି କାର୍ଯ୍ୟ କରିବା ଅଭ୍ୟାସ କୃଷକର ନ ଥାଏ । ସମିତିର ଋଣ ଠିକ ସମୟରେ ଦେବା ନେବା ପାଇଁ ମାତ୍ର ସେ ବାଧ୍ୟ । ସେଥିପାଇଁ କାଳକ୍ରମେ ତାହାର ନିୟମିତ ଭାବରେ କାର୍ଯ୍ୟ କରିବା ଅଭ୍ୟାସ ବଢ଼େ । ସମିତି ପରିଚାଳକମାନେ ଗାଁ ଲୋକ ଥିବାରୁ, କୃଷକ ଋଣ ନେବା ଧନ ସଦ୍‌ବ୍ୟବହାର କରେ କି ନାହିଁ, ସେମାନେ ପ୍ରତିମୁହୂର୍ତ୍ତରେ ବୁଝନ୍ତି । କୃଷକ ବାଧ୍ୟ ହୋଇ ଯେଉଁ କାର୍ଯ୍ୟ ପାଇଁ ଧନ ନେଇ ଥାଏ, ସେଇ କାର୍ଯ୍ୟରେ ତାହା ବ୍ୟୟ କରିଥାଏ । ସ୍ଥୂଳତଃ ସମିତି କୃଷକଙ୍କ ହୃଦୟରେ ସତ୍ୟପରାୟଣତା, ସାଧୁତା, କର୍ତ୍ତବ୍ୟ-ବୋଧ, ମିତବ୍ୟୟିତା ପ୍ରଭୃତି ଜାଗ୍ରତ କରେ ।

ଭାରତରେ ବହୁ ଦିନରୁ ବିବିଧ ଦଳଗତ ବିଦ୍ୱେଷ ବହ୍ନି ଅହରହ ଜଳି ରହିଅଛି । ରାଜନୈତିକ କ୍ଷେତ୍ର ବୋଲ, ଧର୍ମକ୍ଷେତ୍ର କର୍ମକ୍ଷେତ୍ର ବୋଲ, ଯହିଁ ରହିଁ ଅନୈକ୍ୟ, ଅମେଳ, ହିଂସା, ଈର୍ଷ୍ୟା, ଦ୍ୱେଷର ଖରା ଖରା ବିଭତ୍ସ ପ୍ରହସନ ! ଏଣା ଆଶ୍ୱାସନାର କଥା—ସହଯୋଗ ଉଦ୍ୟମ ଏତେବେଳେ ସବୁ ଜାତି, ସବୁ ଶ୍ରେଣୀ, ସମସ୍ତ ଧର୍ମକୁ ଏକ କରି ଉନ୍ନତି ମାର୍ଗରେ ଧୀରେ ଧୀରେ ଚାଲିଅଛି । ସେଇହେତୁ ଜଣେ ଦେଶହିତୈଷୀ କହନ୍ତି—"While the country is being torn as under by fends, political, communal, and religious,. ... there is at least one field in which steady progress is being made as a result of the voluntary and whole hearted combination of all classes and casts. The field is co-operation"

## ସହଯୋଗ ଉଦ୍ୟମର ଅର୍ଥ

ସହଯୋଗ ସମିତିରୁ କେବଳ ଋଣମିଳେ—ଏହି ଏକ କଥା ଲୋକେ କେବଳ ବୁଝନ୍ତି। କେବଳ ଋଣ ଦେଇଥରେ ସମିତର କାର୍ଯ୍ୟ ଯଦ୍ୟପି ଶେଷ ହୁଅନ୍ତା, ତେବେ ତାହା ଗୋଟିଏ ସାଧାରଣ ବା ନିକୃଷ୍ଟ ଧରଣର ଉଦ୍ୟମ ବୋଲି ଅମେ ବୁଝନ୍ତୁ। ତାହାର ଲକ୍ଷ କିନ୍ତୁ ଉଚ୍ଚ, ଉଚ୍ଚ ଧରଣର କାର୍ଯ୍ୟ ଏତେବେଳେ ଯେଥିରେ ସଂସାଧିତ ହୋଇ ଆସୁଅଛି। କେହି କେହି କହନ୍ତି—"... ...he is a mean co-operator, indeed, who considers the emancipation of the poor from the clutches of the money lenders the sole object of co-operation." ଗରିବ ବ୍ୟକ୍ତିଙ୍କୁ ସାହୁକାର ହସ୍ତରୁ ଉଦ୍ଧାର କରିବା ସହଯୋଗ ଉଦ୍ୟମର ଉଦ୍ଦେଶ୍ୟ ବୋଲି ଯେ ସ୍ୱୀକାର କରେ, ସେ ଅବଶ୍ୟ ଜଣେ ଉଚ୍ଚ ଧରଣର ସହଯୋଗୀ। ତେବେ ତହିଁରେ କେଉଁ ଧରଣର ମହତ୍ କଥା ସାଧିତ ହୁଏ ? ଗୋଟିଏ କଥାରୁ ବୁଝା ଯିବ ଯେ—ଆମ ଦେଶରେ ଅଭାବ ଅଛି ଶିକ୍ଷା, ଶିକ୍ଷା ଅଭାବରୁ ସହଯୋଗିତାର ମଧ୍ୟ ଅଭାବ। ଶିକ୍ଷା ଓ ସହଯୋଗିତା ମଧ୍ୟରେ ସମ୍ପର୍କ ଏପରି ନିରବଚ୍ଛିନ୍ନ ଯେ, ଗୋଟିକର ଅଭାବରେ ଅନ୍ୟଟିର ଅଭାବ ଅନୁଭୂତ ହୁଏ। ବର୍ତ୍ତମାନ ଦେଶରେ ଏତେ ଦଳଗତ ଭେଦଭାବ, ମତଭେଦ, ରହିଥିଲେ ସୁଦ୍ଧା ସହଯୋଗ ଉଦ୍ୟମ ଗନ୍ତବ୍ୟ ମାର୍ଗରେ ଅଗ୍ରସର ହେଉଛି ହୋଇ ପ୍ରଚ୍ଛନ୍ନ ଭାବରେ ଅନେକ ଲୋକଙ୍କ ହୃଦୟ ଏକ କରି ନେଉ ଅଛି; ଏକତାର ଗୋଟିଏ ଛବି ସମ୍ମୁଖରେ ସ୍ଥାପନ କରୁଅଛି; କୃଷକର ଦାରିଦ୍ର୍ୟ ଧୀରେ ଧୀରେ ଦୂର କରୁଅଛି; ଲୋକ ହିତକର କାର୍ଯ୍ୟରେ ହସ୍ତକ୍ଷେପ କରିବା ପାଇଁ ଦୁର୍ବଳ ହୃଦୟରେ ବଳ ଦେଉଅଛି। ସାଧୁତା, ସରଳତା, ମିତବ୍ୟୟିତା, କର୍ତ୍ତବ୍ୟପରାୟଣତା ମନ୍ତ୍ରରେ ଲୋକଙ୍କୁ ଦୀକ୍ଷିତ କରି ଧର୍ମର ସାରତତ୍ତ୍ୱ ଲୋକ ସମାଜରେ ଅନବରତ ପ୍ରଚାର କରୁଅଛି।

ଏ ସବୁ ପ୍ରକୃତ ଶିକ୍ଷାର ଫଳ ଦିନା ! ଜଣେ କହୁଛନ୍ତି—"... in education our country is still hopelessly backward. But co-operation we must not forget is a powerful educative agent : is indeed a form of education in itself"

ଶିକ୍ଷା ଦଗରେ ଆମ ଦେଶ ଖୁବ୍ ପଶ୍ଚାତପଦ । ମାତ୍ର ଭୁଲିବାକୁ ହେବ ନାହିଁ ଯେ—ସହଯୋଗିତା ଶିକ୍ଷାର ଗୋଟିଏ ବିଶିଷ୍ଟ ଅଙ୍ଗ । ତାହା ଅବଶ୍ୟ ଶିକ୍ଷାର ନାମାନ୍ତର କହିବା ସୁସଙ୍ଗତ ।

### ସହଯୋଗ ଉଦ୍ୟମର ପ୍ରସାର

ଉଦ୍ୟମର ପ୍ରସାର ଅନୁପାତରେ ଦେଶର ମୁକ୍ତି ଅବଶ୍ୟମ୍ଭାବୀ; କୃଷକର ଅବସ୍ଥା ସ୍ୱଚ୍ଛଳ ହେଲବୋଲି ବୁଝିବା କଥା । ତେବେ ଏଥିପ୍ରତି ଦେଶର ନାନା ଆଡ଼ୁ ଦୃଷ୍ଟି ପଡ଼ି ପାରିଲେ, ଉନ୍ନତ ଆଡ଼କୁ ଉଦ୍ୟମର ଗତି ଅବାଧରେ ଚାଲି ପାରିବ । ବର୍ତ୍ତମାନ ଅବସ୍ଥାରୁ ଧରାଯାଏ—ଦେଶର ଶିକ୍ଷିତ କର୍ମୀଗୃହୀମାନେ ସହଯୋଗ ଉଦ୍ୟମର ପ୍ରସାର କାମନାରେ ପ୍ରାୟଶଃ କିଛି କରି ନାହାନ୍ତି, କରୁଛନ୍ତି ଅନ୍ୟ ଲୋକେ—ପ୍ରଧାନତଃ ସ୍ୱତନ୍ତ୍ର ବ୍ୟବସାୟୀମାନେ । ଏତେବେଳ ସରକାର ଉଦ୍ୟମର କାର୍ଯ୍ୟ ତୃପ୍ତିକର ଜଣା ଯାଉଥିଲେ ମଧ୍ୟ କେତେକ ଅଞ୍ଚଳରେ ଗୁରୁତର ଅଭାବ ଅନୁଭୂତ ହୁଏ ।

### ଅଭାବ କ'ଣ ?

କୃଷକମାନେ ନଷ୍ଟର ସାହୁକାରଙ୍କଠାରୁ ଋଣ ନେବା ଅଭ୍ୟାସ ଛାଡ଼ି ନାହାନ୍ତି । ପଦ୍ଧତି ଯେପରି, ନିତାନ୍ତ ଗରିବ କୃଷକମାନଙ୍କୁ ସମିତିରୁ ଋଣ ନେବା ସୁବିଧା ନ ଥାଏ । ଲୋକଙ୍କ ଅଭାବ ଅନୁପାତରେ ସମିତି

ଧନ ଯୋଗାଇ ପାରେ ନାହିଁ । ମଜ୍ଜୁର ହୋଇ ଥିବା ଧନ ପଞ୍ଚାୟତଦାର, ପୁରାତନ ସଭ୍ୟ, ସମ୍ପାଦକ ପ୍ରଭୃତିଙ୍କୁ ନଅଣ୍ଟ ହୁଏ । ଅତିରିକ୍ତ ସୁଧରେ ଋଣ ଦେଉଥିବା ସାହୁକାରମାନେ ସମିତିରୁ ଋଣ ନେଇ ଉଚ୍ଚ ଦରରେ ଋଣ ଦେଉଥିବା ଅନେକ ଦେଖାଯାଏ । କୃଷକମାନେ ଦାନାକନା ଅଭାବରୁ ପୂର୍ବବତ୍ ପିଲା କୁଟୁମ୍ବ ଛାଡ଼ି ସୁଦୂର ରେଙ୍ଗୁନ ଆସାମ ଯା'ନ୍ତି ।

ଏକ ଉପାୟ

ଯେତେ ଦିନ ପର୍ଯ୍ୟନ୍ତ ନିତାନ୍ତ ଗରିବ କୃଷକମାନେ ସମିତିରୁ ଋଣ ନେଇ ପାରିବେ ନାହିଁ, ତେତେ ଦିନ ପର୍ଯ୍ୟନ୍ତ ସହଯୋଗ ଉଦ୍ୟମରେ ଗୋଟିଏ ଗୁରୁତର ଅଭାବ ଅଛି, ଭାବିବା କଥା । ତେବେ ଏ ଅଭାବ ଦୂର ହେବ କପରି ? ପଞ୍ଚାୟତଦାର, ଜମିଜଦାରମାନେ କିଞ୍ଚିତ ସ୍ୱାର୍ଥ ତ୍ୟାଗ କରି ସେମାନଙ୍କ ସହାୟ ହେବା ଉଚିତ । ସେମାନଙ୍କୁ କେବଳ ଧନ ଋଣ ଦେଲେ ଯଥେଷ୍ଟ ନୁହେ, ସେମାନଙ୍କୁ ଫେରେ ଧନାଗମର ଗୋଟାଏ ସହଜ ଅଥଚ ଉନ୍ନତ ଧରଣର ପନ୍ଥା ଦେଖାଇବାକୁ ହେବ । ଦୁର୍ଭାଗ୍ୟବଶତଃ ସେ କ୍ଷତିଗ୍ରସ୍ତ ହେଲେ ପଞ୍ଚାୟତଦାର ଏବଂ ଜାମିନଦାରମାନେ ସମିତିର ପଦ୍ଧତି ଅନୁସାରେ ଅବିଚଳିତ ଚିତ୍ତରେ ଦୀନକୃଷକକୁ ସାହାଯ୍ୟ କରୁଥିବ, ତାହାର ଋଣଧନ ପରିଶୋଧ କରି ଦେଉଥିବେ । ଏହି ଧରଣରେ ଶତକଡ଼ା ୫ ଗରିବ କୃଷକ ଧନୀ ସଭ୍ୟଙ୍କଠାରୁ ସାହାଯ୍ୟ ପାଇ ପାରିଲେ ସହଯୋଗ ଉଦ୍ୟମ ସମ୍ପୂର୍ଣ୍ଣ ସାଫଲ୍ୟମଣ୍ଡିତ ହେବ । ତାହାର ସୂଚନା ସ୍ଥାନେ ସ୍ଥାନେ ଦେଖା ଦେଲାଣି । ବର୍ତ୍ତମାନ ଅବସ୍ଥାରୁ ଅନୁମିତ ହୁଏ—ସହଯୋଗ ଉଦ୍ୟମ ହିଁ ଭାରତର ମୁକ୍ତିଗତିର ଏକମାତ୍ର ଆଧାର । ସମସ୍ତଙ୍କ ସାହାଯ୍ୟ ସହାନୁଭୂତିରେ ତାହା ଭାରତର ମୁଖ ଉଜ୍ଜ୍ୱଳ କରିବ ବୋଲି ଆଶା ।



# ମୂଳ ଉପାଦାନ ୪

"If there be water, there must be seedlings."

୧ । ଜଳ—ଜଳ କୃଷି କାର୍ଯ୍ୟର ପ୍ରଧାନ ସମ୍ବଳ । ବୃଷ୍ଟିର ଅବସ୍ଥାକୁ ଗୃହି କେଉଁ ସମୟରେ କେଉଁ ଫସଲ କରିବା ଉଚିତ, ତାହା ସ୍ଥିର କରିଯାଇ ଅଛି । ବୃଷ୍ଟିପାତ ସର୍ବଦା ମାନ୍ସୁନ୍ ବାୟୁ ସ୍ରୋତ ଉପରେ ନିର୍ଭର । ଏହି ମାନସୁନ୍ ବାୟୁ ସ୍ରୋତ ବର୍ଷ ମଧ୍ୟରେ ଭିନ୍ନ ଭିନ୍ନ ସମୟରେ ଅନେକ ଥର ପ୍ରବାହିତ ହୁଏ । ସେଇ ହେତୁ ବର୍ଷ ଭିତରେ ଅନିଶ୍ଚିତ-ଭାବରେ ବେଳେ ବେଳେ ବୃଷ୍ଟିପାତ ହେଉଥିବା ଦେଖା ଯାଉଅଛି । ନିର୍ଦ୍ଦିଷ୍ଟ ସମୟରେ ବୃଷ୍ଟି ନ ହୋଇ ଅନିଶ୍ଚିତଭାବରେ ହେଲେ କୃଷକର ବାସ୍ତବିକ ଅସୁବିଧା ହୁଏ । ଆମ ଦେଶରେ କେତୋଟି ମାନ୍ସୁନ୍ ବାୟୁ ସ୍ରୋତ ନିର୍ଦ୍ଦିଷ୍ଟ ସମୟରେ ବହୁ ଥିବାରୁ ନିର୍ଦ୍ଦିଷ୍ଟ ସମୟରେ ବର୍ଷା ହେଉଅଛି । ଆରବ ସାଗରରୁ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ସମୟରେ ଗୋଟିଏ ମାନ୍ସୁନ୍ ବାୟୁ ସ୍ରୋତ ବମ୍ବେଇଠାରୁ ଆରମ୍ଭ କରି ଭାରତ ବକ୍ଷରେ ପ୍ରବାହିତ ହୋଇ-ଥାଏ । ସେଇ ସମୟଟି ଆମମାନଙ୍କ ଚଉମାସିଆ ।

ସମୁଦ୍ର ଜଳ ଉତ୍ତପ୍ତ ହୋଇ ବାଷ୍ପ ଆକାରରେ ଗଗନ ମାର୍ଗକୁ ଉଠେ । ସେହି ବାଷ୍ପ ବା ବାୟୁ କାଳକ୍ରମେ ଘନୀଭୂତ ଏବଂ ଶୀତଳ ହୋଇ ବର୍ଷାଜଳ ସ୍ୱରୂପ ତଳକୁ ଖସେ । ସେଇ ବାଷ୍ପକୁ ମାନ୍ସୁନ୍ ବାୟୁ କହାଯାଏ । ଯେତେବେଳେ ମାନସୁନ୍ ବାୟୁ ବିଶେଷଭାବରେ ପ୍ରଖର ଗତିରେ ବହେ, ସେତେବେଳେ ତୋଫାନ ଜାତ ହୋଇଥାଏ । ସମୁଦ୍ର

ନିକଟବର୍ତ୍ତୀ ପର୍ବତ, ଅରଣ୍ୟରେ ମାନ୍‌ସୁନ୍ ବାୟୁ ବାଧା ପାଇ ଥଣ୍ଡା ପାଇବା ସ୍ୱାଭାବିକ। ସେଇ ହେତୁ ସମୁଦ୍ର ଉପକୂଳସ୍ଥ ପର୍ବତ, ଅରଣ୍ୟାଦିରେ ବର୍ଷାର ପରିମାଣ ଅଧିକ।

ଏଇ ଧରଣରେ ବର୍ଷା ହୁଏ ବୋଲି କୃଷକ ବୁଝେ ନାହିଁ। ତାହାର ବୁଦ୍ଧି, ବିଶ୍ୱାସ, ବିଚାର ଏକାବେଳକେ ଭିନ୍ନ। ଇନ୍ଦ୍ର ଦେବତାଙ୍କ ରାଜା। ପବନ, ମେଘ ପ୍ରଭୃତି ଇନ୍ଦ୍ରଙ୍କ ଇଙ୍ଗିତରେ କାର୍ଯ୍ୟ କରିଥାନ୍ତି ବୋଲି ସେ ଭାବେ। କୃଷକମାନେ ସେଇ ହେତୁ ଅନାବୃଷ୍ଟି ବେଳେ ଇନ୍ଦ୍ରଦେବଙ୍କ ନାମରେ ଅନେକ ପୂଜାବିଧି କରନ୍ତି, ଭୋଜିଭାତ, ଯାଗଯଜ୍ଞ, ଦାନ-ପୁଣ୍ୟର ସୀମା ରହେ ନାହିଁ। ଦୈବାତ୍ ବର୍ଷା ହେଲେ ହୁଏ, ନ ହେଲେ ହୁଏ କର୍ମର ଦୋଷ। ଢିଙ୍କି ସ୍ୱର୍ଗକୁ ଉଠୁ, ଶେଷରେ କୁଟେ କେବଳ ଧାନ। କୃଷକମାନଙ୍କ ଦାନପୁଣ୍ୟ, ଯାଗଯଜ୍ଞ, ପୂଜାବିଧି ଯେଉଁ ଦେବତାଙ୍କ ନାମରେ ହେଲେ ମଧ୍ୟ ଶେଷକୁ 'ପେଟୁକଙ୍କ' ଉଦରସ୍ଥ ହେବା କଥା, ଅନ୍ୟ କିଛି ନୁହେ। ପେଟୁକ ପୁରୋହିତମାନଙ୍କ ମଧ୍ୟରୁ ଅଧିକାଂଶ ସଂସ୍କୃତର ଅକ୍ଷର ପରିଚୟ ସୁଦ୍ଧା ନ ପାଇ ଉଦର ପୋଷଣାର୍ଥେ ସଂସ୍କୃତ ମନ୍ତ୍ର ମୁଖସ୍ଥ କରିଥାନ୍ତି। ମୁଖସ୍ଥ ମନ୍ତ୍ରଗୁଡ଼ିକ ସେମାନେ ଯେଉଁ ବିକୃତ କଦର୍ଯ୍ୟଭାବରେ ଉଚ୍ଚାରଣ କରୁଥାନ୍ତି, ସେଥିରେ ଦେବତାମାନେ ସ୍ୱର୍ଗରୁ ଖସି ଯାଗପୀଠରେ ଆସି ଠିଆ ହେବା କେତେଦୂର ସମ୍ଭବ କେଜାଣି! ଆଉ ବ୍ରାହ୍ମଣ ଭୋଜନ! ସେତେବେଳେ ଶାସନୀବ୍ରାହ୍ମଣଙ୍କ ଗୋଲ ଚହଲ, ହୁରିହଟା ଯେ ଥରେ ଦେଖିଥିବ, ଯଥେଷ୍ଟ! କୃଷକଙ୍କ ଏ ଜଳ ଅପଚୟରେ ଦାନ ଭୋଜନ ଦ୍ୱାରା ଦେବରାଜ ଇନ୍ଦ୍ର କପରି ସଦୟ ହୋଇ ବର୍ଷା କରନ୍ତି, ତାହା ବୁଝିବା ବାସ୍ତବିକ କାଠିକର ପାଠ। ବର୍ଷା ଉଦ୍ଦେଶ୍ୟରେ କୃଷକମାନେ ପ୍ରତିବର୍ଷ ଅଜସ୍ର ଧନବ୍ୟୟ କରିଥାନ୍ତି। ସେମାନେ ଏକେତ ଦରିଦ୍ର, ଅନ୍ଧବିଶ୍ୱାସଜନିତ ଅଜସ୍ର ଧନ ବ୍ୟୟରୁ ସେମାନଙ୍କ ଦାରିଦ୍ର୍ୟମାତ୍ରା ଆହୁରି ମଧ୍ୟ ବଢ଼ିଥାଏ।

ବର୍ଷାଜଳ ଉପରେ ଅନେକ ଫସଲ ନିର୍ଭର । ବର୍ଷା ଠିକ୍ ସମୟରେ ହେବା ଆଶାର କଥା ନୁହେ, ସୁତରାଂ ଇଂରେଜ ଶାସନରେ କୃଷକଙ୍କ ସହାଶେ ବିଶେଷ କେନାଲ, ଖମା, ଅଗୁଲ, ବନ୍ଧର ବନ୍ଦୋବସ୍ତ ହୋଇ ପାରିଥିଲେ ମଧ୍ୟ ଆବଶ୍ୟକ ଆଶାନୁରୂପ ହୋଇ ନାହିଁ । "Irrigation has been greatly extended over the Punjab, Sind, United Provinces and Madras through government cannals." ଗଭର୍ଣ୍ଣମେଣ୍ଟ କେନାଲଜଳ ମାଡ଼ିବା ସୁବିଧା ବିଶେଷ-ଭାବରେ ପଞ୍ଜାବ, ସିନ୍ଧ, ଯୁକ୍ତପ୍ରଦେଶ ଆଉ ମାନ୍ଦ୍ରାଜ ଅଞ୍ଚଳରେ ହୋଇ-ଅଛି । 'Tank irrigation is common in Central and southern India' ମଧ୍ୟ ଏବଂ ଦକ୍ଷିଣ ଭାରତରେ ଜମିର ଜଳାଧାର ସାଧାରଣତଃ ଅଗୁଲ ।

ଯେଉଁ ଦେଶରେ ବଣ ଜଙ୍ଗଲ ଦିନକୁ ଦିନ ସରିଯାଏ, ସେହି ସେହି ଦେଶମାନଙ୍କରେ ବର୍ଷା ଭଲ ହୁଏନାହିଁ; ଯାହାକିଛି ହୁଏ, ଅନିଶ୍ଚିତ ଭାବରେ ହୋଇଥାଏ । ଆମ ଦେଶରେ ବଣ ଜଙ୍ଗଲ ପୂର୍ବପରି ଆଉ ନାହିଁ, ନାନାବିଧ କଳକାରଖାନା ଯୋଗୁଁ ଅରଣ୍ୟଗୁଡ଼ିକର ସତ୍ତା ପର୍ଯ୍ୟନ୍ତ ଲୋପ ପାଉଅଛି । ପୂର୍ବପରି ଆମ ଦେଶରେ କେବଳ ସେଇ କାରଣରୁ ବର୍ଷା ହୁଏନାହିଁ । ବର୍ଷା ଉପରେ ନିର୍ଭର ରହି ଶସ୍ୟ ଉତ୍ପନ୍ନ କରିବା ଲୋକଙ୍କ ଆଜଯାଏ ଅଭ୍ୟାସ ଥିଲା । ମାଘ ଫାଲ୍‌ଗୁନରେ ବର୍ଷା ହେଲେ ମଧ୍ୟ ଚାଷ ନ କରି ଲୋକେ ବୈଶାଖରେ ଚାଷ କରି ଜ୍ୟୈଷ୍ଠରେ ବୁଣାବୁଣି କରୁ-ଥିଲେ; ସର୍କାରୀ କେନାଲ ପ୍ରତି ଦୃଷ୍ଟି ନ ଦେଇ ସ୍ୱାଭାବିକ ଏବଂ ଅନିଶ୍ଚିତ ବର୍ଷା ଜଳରେ କୃଷିକାର୍ଯ୍ୟ ନିର୍ବାହ କରି ନେଉଥିଲେ । ଏଣିକି ଅବସ୍ଥା ଗୁଡ଼ିଏ ବ୍ୟବସ୍ଥା କରିବା ଆବଶ୍ୟକ । ବନ୍ଧ ଅନିକାଟ ପ୍ରଭୃତି କୃତ୍ରିମ ଉପାୟରେ ଜଳ ଯେପରି ଜମିରେ ଠିକ୍ ସମୟରେ ମାଡ଼ିବ, ସେଥି ପ୍ରତି ଶାସକଙ୍କ ଦୃଷ୍ଟି ଆକର୍ଷଣ କରିବା ଆବଶ୍ୟକ ।

୨ । ମୃତ୍ତିକା—କୃଷକର ମୂଳଉପାଦାନ ମୃତ୍ତିକା । ମୃତ୍ତିକା ବ୍ୟତୀତ କୃଷିକାର୍ଯ୍ୟ ଚାଲିବା ଅସମ୍ଭବ । ଭୂତତ୍ତ୍ୱବିତ୍ ପଣ୍ଡିତଙ୍କ ମତରେ—ଏକ ସମୟରେ ଜଗତରେ ମୃତ୍ତିକା ନ ଥିଲା, ପୃଥିବୀ ଥିଲା ଗୋଟିଏ ଅଗ୍ନିପିଣ୍ଡ଼ୁଲା । ଅଗ୍ନିପିଣ୍ଡୁଲା କାଳକ୍ରମେ ଶୀତଳ ହୋଇ କଠିନ ଶିଳାରେ ପରିଣତ ହେଲା । ତେଣେ ଅଗ୍ନିପିଣ୍ଡୁଳା ଶୀତଳ ହେଉ ହେଉ ବାୟୁମଣ୍ଡଳର ଜଳୀୟ ବାଷ୍ପ ଶୀତଳ ହୋଇ ବର୍ଷାରୂପରେ ଖସି ମହା ସମୁଦ୍ର ହୋଇଅଛି । ମୃତ୍ତିକାର ସୃଷ୍ଟି ତେବେ ହେଲା କପରି ? ପାଣି, ପବନ ତୁଷାରର ଯୁଗବ୍ୟାପୀ ସଂଘର୍ଷଣରୁ ଧୀରେ ଧୀରେ ଶିଳା କ୍ଷୟ ହୋଇ ମୃତ୍ତିକାରେ ପରିଣତ ହୋଇଅଛି । ପ୍ରାଣୀ ଶରୀର, ବୃକ୍ଷ ଲତା ପତ୍ରର ଧ୍ୱଂସାବଶେଷ ମଧ୍ୟ ମୃତ୍ତିକା । ଜଳଚର, ସ୍ଥଳଚର—ପ୍ରତ୍ୟେକ ପ୍ରାଣୀର ମଳ ପ୍ରତ୍ୟହ ମୃତ୍ତିକାରେ ମିଶିଥାଏ ।

ମୃତ୍ତିକା ଦେହରେ କେତେଗୁଡ଼ିଏ ଉପାଦାନ ରହିଅଛି । ପାଣି, ପବନ ଓ ଉତ୍ତାପ ସାହାଯ୍ୟରେ ସେଗୁଡ଼ିକ ଉଦ୍ଭିଦ ଜଗତର ପୁଷ୍ଟିକର ଖାଦ୍ୟ ହୋଇଥାଏ । ପାଣି, ପବନ ଉତ୍ତାପ ହେବା ଭଲ ସେଇ ହେତୁ କର୍ଷଣ, ଖନନ ଯୋଗେ ମୃତ୍ତିକା ଢିଲା ରଖିବା ଆବଶ୍ୟକ ହୁଏ ।

ମୃତ୍ତିକା ଉଦ୍ଭିଦ ଜଗତର ମାତୃସ୍ଥାନୀୟ । ସନ୍ତାନମାନେ ମାତୃ-ସ୍ତନ୍ୟ ପାନ କରି ହୃଷ୍ଟପୁଷ୍ଟ ହେବା ଭଳି, ଉଦ୍ଭିଦ ଜଗତ ମୃତ୍ତିକାରୁ ରସ ଗ୍ରହଣ କରି ସତେଜ ଏବଂ ପଲ୍ଲବିତ ହୁଅନ୍ତି । ବୃକ୍ଷର ଚେର ମୃତ୍ତିକା ମଧ୍ୟରେ ଲୁକ୍କାୟିତଭାବରେ ରହି ପ୍ରାଣୀଙ୍କ ଅତ୍ୟାଚାରରୁ ରକ୍ଷା ପାଇଥାଏ । ମୃତ୍ତିକା ଉଦ୍ଭିଦ ଜଗତର ଖାଦ୍ୟଘର; ଆର୍ଦ୍ରତା, ତାପ ଅନବରତ ଧରି ରଖି ବୃକ୍ଷାଦି ବଢ଼ିବାରେ ସାହାଯ୍ୟ କରେ ।

ମାଟି ଅନେକ ପ୍ରକାର । ବାଲିଆ, ମଟାଳ, ଦୋରସା, ପଙ୍କୁଆ—ଏଇ ସବୁ ପ୍ରକାର ମାଟିର ମିଶଣରେ ସ୍ଥଳ ବିଶେଷରେ ମୃତ୍ତିକାର ଆକୃତି,

ପ୍ରକୃତି ବଦଳିଥାଏ । ବାଲିଆ ମାଟିରେ ସୂର୍ଯ୍ୟ ଉତ୍ତାପ ବିଶେଷଭାବରେ ପ୍ରବେଶ କରୁଥିବାରୁ ତାହାର ଆର୍ଦ୍ରତା ଶୀଘ୍ର ନଷ୍ଟ ହୁଏ । ସେହି ହେତୁ ବାଲିଆ ମାଟି ଯେ କୌଣସି କୃଷି ପକ୍ଷେ ତେତେ ଉପଯୋଗୀ ହୋଇ-ପାରେ ନାହିଁ । ମଟାଳ, ପଙ୍କୁଆ ମାଟି ବାଲିଆ ମାଟି ଅପେକ୍ଷା ଅନେକ ଗୁଣରେ ଅଧିକ । ଦୋରସା ସର୍ବୋତ୍କୃଷ୍ଟ ବିବେଚିତ ହୁଏ ।

ବାଲିଆ ମାଟିରେ ଖମ୍ବଆଳୁ, କାକୁଡ଼ି, ଚିଲଣା, ତରଭୁଜ, ଆଖୁ ଜହ୍ନି, ପୋଟଳ, ଚିନାବାଦାମ, କନ୍ଦମୂଳ, ମକ୍କା, କୋଳଥ ପ୍ରଭୃତି ହୁଏ । ବିରି, ମୁଗ, ଗ୍ରୀଷ୍ମଧାନ, ଛଣି, ଧଣ୍ଡିଗ୍ର, ସୋରିଷ ପାଇଁ ମଧ୍ୟ ତାହା ଅନୁପଯୋଗୀ ନୁହେ । ମଟାଳ ମାଟିରେ ଗହମ, ବନ୍ଧାକୋବି, ବଡ଼ଧାନ, ଆଖୁ ଭଲ ହୁଏ । ଦୋରସା ମାଟି ସକଳ ପ୍ରକାର କୃଷିପାଇଁ ଅତ୍ୟନ୍ତ ଉପଯୋଗୀ । ଏଥିରେ ଗହମ, ମକ୍କା, ଧୂଆଁ, ଆଖୁ, ଧାନ, କପା, ଫୁଲ-କୋବି, ହଳଦି, ଅଦା, ସାରୁ, କଦଳୀ, ଓଲ, ଚିନାବାଦାମ ଭଲ ହୁଏ ।

ମୃତ୍ତିକାରେ ଅଙ୍ଗାରକ, ଅମ୍ଳଜାନ, ଜଳଜାନ, ସୋରଜାନ, ପଟାସ, ଚୂନ, ଫସ୍ଫରସ୍, ଗନ୍ଧକ, ମାଗ୍ନେସିଆ, ଲୌହ ପ୍ରଭୃତି କେତେକ ରାସାୟନିକ ଉପାଦାନ ରହିଅଛି । ଏସବୁ ଯେଉଁ ମୃତ୍ତିକାରେ ଥାଏ, ତାହା କୃଷି ପକ୍ଷରେ ଅତ୍ୟନ୍ତ ଉପଯୋଗୀ ହୁଏ । ଏହି ଉପାଦାନ ଗୁଡ଼ିକ ଜଳ ସହିତ ନ ମିଶିଲେ ଉଦ୍ଭିଦର ଗ୍ରହଣଯୋଗ୍ୟ ହୁଏ ନାହିଁ । ସେ ସମସ୍ତ ଉପାଦାନ କେବଳ ବୃଷ୍ଟିଜଳ ହେଉ ବା ମଡ଼ାଜଳ ସହିତ ମିଶି ରସରୂପରେ ଉଦ୍ଭିଦର ଖାଦ୍ୟ ହୁଏ । ଯେଉଁ ମୃତ୍ତିକାରେ ଉପରୋକ୍ତ ଉପାଦାନ ଗୁଡ଼ିକରୁ କେତୋଟି ଅଭାବ ହୁଏ, ସେଥିରେ ବୃକ୍ଷାଦି ଭଲ ପଲ୍ଲବିତ ହୁଅନ୍ତି ନାହିଁ । ଜଳ ଅଭାବ ହେଲେ ବୃକ୍ଷାଦି ଆଦୌ ବଢ଼ନ୍ତି ନାହିଁ ।

## ସାର ୪

"The well manured field and a well managed daughter-in-law will not turn out badly"

ଏକ ଜମିରେ ଅନେକ ବର୍ଷ ଖଜ କଲେ ଭୂମିର ଉର୍ବରା ଶକ୍ତି ନଷ୍ଟ ହୁଏ । ଫେରେ ଭୂମିରେ ଯେ କୌଣସି ଏକ ଫସଲ ଅନେକ ଥର କଲେ, ତାହା ଜମିର ଉର୍ବରତା ଭ୍ରଷ୍ଟ କରି ଥାଏ । ସାଧାରଣତଃ ଲୋହିତ, ଶ୍ୱେତ, ଧୂସର ଜମି ଅନୁର୍ବର । ଅତଏବ ଘନ ଘନ ସାର ପ୍ରୟୋଗ ଦ୍ୱାରା ଜମିର ଉର୍ବରତା ବୃଦ୍ଧି କରିବା ନିତାନ୍ତ ଆବଶ୍ୟକ ।

କୃଷକମାନେ ବିଶେଷ ଭାବରେ ଗୋବର ଖତ ପ୍ରୟୋଗ କରିଥାନ୍ତି । ସେଥିରୁ ଅଧିକାଂଶ ଗରିବ କୃଷକ କାଠ ଅଭାବରୁ ଜାଳି ଦେଇ ଥାଏ । ଆଉ କିଛି ନିବାସ ଘର ନିକଟରେ, ଗାଁ ମଧ୍ୟରେ, ଫେରେ ଗାଁ ଶେଷରେ ଜମାକରି ରଖି ଥା'ନ୍ତି । ତହିଁର ସାରତକ ବର୍ଷାରେ ଧୋଇ ହୋଇ-ଯାଏ, ରହେ କେବଳ କୁଟା କାଟି । ସେଇତକ ଯଥା ସମୟରେ କୃଷକ-ମାନେ ଜମିରେ ପ୍ରୟୋଗ କରିଥାନ୍ତି । ତାହା ଯଥେଷ୍ଟ ହୁଏ ନାହିଁ, ଭଲ ହୁଏ ନାହିଁ । ତେବେ ଭଲ ହେବ କିପରି ?

ଯେ କୌଣସି ସ୍ଥାନରେ ଖତଗଦା କରି ଦେବା ଦ୍ୱାରା ସ୍ୱାସ୍ଥ୍ୟ ପକ୍ଷରେ ଅତ୍ୟନ୍ତ ଅହିତକର ହୁଏ । ଦ୍ୱିତୀୟତଃ ସାରର ଅସଲ ସତ୍ତ୍ୱତକ ବର୍ଷା ଜଳରେ ଧୋଇ ହୋଇଯାଏ । ସେଇ କାରଣରୁ ଅନେକ ସ୍ଥାନରେ ଲୋକେ ଗୋରୁ ପୋଡ଼ ଗୁହାଳିଙ୍କୁ ଗୋଟିଏ ଧରଣରେ ପ୍ରସ୍ତୁତ କରି-ଥାନ୍ତି । ତାହା ଏକ ପୁରୁଷ ଗଭୀର ଥାଏ । ପ୍ରତ୍ୟହ ସେଥିରୁ ଗୋବର

ବାହାର କରାଯାଏ ନାହିଁ । ତାଲପତ୍ର ସେଥି ଉପରେ ଏପରି ଘଞ୍ଚ ଭାବରେ ଆବୃତ କରାଯାଏ ଯେ, ପରବନ୍ଦନ ଜନ୍ତୁମାନେ ସେଥି ଉପରେ ସୁବିଧାରେ ଠିଆ ହୁଅ କରି ପାରନ୍ତି । କ୍ରମଶଃ ଗୋବର ପତ୍ରରେ ଗୁହାଣୀ ଗର୍ତ୍ତିଟା ଭୂମିସମାନ ହୋଇଥାଏ । କୃଷକମାନେ କ୍ଷେତବାଡ଼ିରେ ନେଇ ବିଞ୍ଛି ଦିଅନ୍ତି ନଚେତ୍ ଯେ କୌଣସି ସ୍ଥାନରେ ଗାତଟିଏ କରି ସେଥି ମଧ୍ୟରେ ରଖନ୍ତି । ତଦ୍ୱାରା ଗାଁ ଅନିର୍ମଳ ହୁଏ ନାହିଁ ।

ଗ୍ରାମ୍ୟ ପଶୁମାନଙ୍କର ମଳ ମୂତ୍ର ଉତ୍କୃଷ୍ଟ ସାର ସ୍ୱରୂପ ଧରା ଯାଇ-ଅଛି । କୃଷକମାନେ ଗୋବର ପ୍ରତି ଜାଗ୍ରତ ନାଅନ୍ତି, ମୂତ୍ର ଦାଣ୍ଡ ମଝିରେ, ଘର ମୂହଁରେ ଫିଙ୍ଗି ଦିଅନ୍ତି । ତଦ୍ୱାରା କୃଷକମାନଙ୍କ ସ୍ୱାସ୍ଥ୍ୟର ହାନି ଘଟୁଥାଏ । ଉତ୍କୃଷ୍ଟ ସାରତକ ଅଜ୍ଞାତସାରରେ ଫିଙ୍ଗି ଦିଆଯାଇଥାଏ । ତେବେ ପଶୁମୂତ୍ର ସଞ୍ଚୟ କରାଯିବ କିପରି ?

ଗୁହାଣୀ ପଟା ଉପରେ ୬ ଇଞ୍ଚ ପର୍ଯ୍ୟନ୍ତ ମାଟି ବିଞ୍ଛା ଯାଏ । ବାଲି-କସିଆ ମାଟି ହେଲେ ପଶୂମୂତ୍ର ଶୋଷଣ କରି ରଖେ, ଆଉ କାଦୁଅ ହୁଏ ନାହିଁ । ଏକମାସ ପର୍ଯ୍ୟନ୍ତ ତାହା ସେହି ଭାବରେ ରଖି, ପରେ ଉଠାଇ ନେଇ ଜମିରେ ବିଞ୍ଛା ଯାଇପାରେ; ନତୁବା ଯେ କୌଣସି ସ୍ଥାନରେ ଗାତ କରି ପୋତି ରଖାଯାଇପାରେ । ମାସକେ ଥରେଲେଖାଁ ମାଟି ବିଞ୍ଛା, ସଫା କରାଯାଉଥିବା ଉଚିତ ।

ମେଷ, ବ୍ଲେଡ୍ ଲେଣ୍ଡି, ମୂତ୍ର, ପାରା ଲେଣ୍ଡି, ପଙ୍କ, ହାଡ଼ଗୁଣ୍ଡ ଉତ୍କୃଷ୍ଟ ଧରଣର ସାରରେ ଗଣ୍ୟ । ହାଡ଼ଗୁଣ୍ଡ ଧାନ ଖନ୍ଦ ପାଇଁ ବିଶେଷ ଭାବରେ ଉପଯୋଗୀ । ଏକରକେ ୫୦୦ ପାଉଣ୍ଡ ବ୍ୟବହାର କଲେ ପାଞ୍ଚ ଭରଣ ଅମଳ ଅସିବା ଭୂମିରେ ଭ ୬ । ୭ରଣ ଅମଳ କରାଯାଏ । ତାହା ଧାନ ବୁଣିବାପରି ଧାନ ସଙ୍ଗେ ସଙ୍ଗେ ବୁଣାଯାଏ । ହାଡ଼ଗୁଣ୍ଡ ପ୍ରୟୋଗ କରା ଯାଇଥିବା ଭୂମିରେ ୧ମ, ୨ୟ ବର୍ଷ ଅପେକ୍ଷା ତୃତୀୟ ବର୍ଷରେ ଭଲ ଅମଳ

ଅସୁଥିବାର ଧରାଯାଇଅଛି । ୧୯୦୭—୧୯୦୮ରେ ଭାରତବର୍ଷରୁ ୮୬,୭୦୦ ଟନ ହାଡ଼ ବିଦେଶକୁ ପଠାଯାଇଥିଲା । କେବଳ ମାନ୍ଦ୍ରାଜରୁ ୮୦୪୪ ଟନ୍ ବିଦେଶକୁ ରପ୍ତାନି ହୋଇ ଥିବା ପ୍ରକାଶ । ମାଛସାର ଧାନ, ଆଖୁ, ମରିଚ ପକ୍ଷରେ ଉତ୍ତମ । ସେଥିରେ ପାଉଁଶ ମିଶ୍ରଣ କରି ଏକରକେ ୫୪୦ ପାଉଣ୍ଡ ପ୍ରୟୋଗ କରାଯାଏ । ଜଳ ମାଡ଼ିବା ଜମିରେ ପିଡ଼ିଆ, ମେଣ୍ଢାଖତ ଅପେକ୍ଷା ତାହା ଅଧିକ ସାରବାନ୍ ବୋଲି ପରୀକ୍ଷିତ ହୋଇ ଅଛି । ପଶ୍ଚିମାଞ୍ଚଳେ ତାହା ବିଶେଷ ଭାବରେ ବ୍ୟବହାର କରନ୍ତି । କୋଇମ୍ବତୂର କୃଷକମାନେ ତାହା ବ୍ୟବହାର କରିବା ଜମିରୁ ଶତକଡ଼ା ୫୬ ଧାନ, ୩୪ ପାଲ ଅଧିକ ଲାଭ ପାଇଥାନ୍ତି । ପ୍ରତି ଦୁଇ ବର୍ଷରେ କେବଳ ମାନ୍ଦ୍ରାଜରୁ ମାଛସାର ୧୬୦୦୦ ଟନ୍ ବିଦେଶକୁ ରପ୍ତାନି ହୋଇଥାଏ, ସମଗ୍ର ଭାରତରୁ ୧୮୧୫୬ ଟନ ବୋଲି ପ୍ରକାଶ । ପ୍ରତି ମିନିଟରେ ଭାରତରୁ ସାତ ମହଣ ହାଡ, ସାତ ମହଣ ପିଡ଼ିଆ ବିଦେଶକୁ ରପ୍ତାନି ହୁଏ । କୃଷକକୁଳର କଲ୍ୟାଣ ଉଦ୍ଦେଶ୍ୟରେ ଏଣିକି ଏଭଳି ଜିନିସର ରପ୍ତାନି ପ୍ରଥା ରହିତ କରାଯିବା ବନ୍ଦୋବସ୍ତ ଚାଲିଛି ।

ଜମିର ଉର୍ବରତା ପିଡ଼ିଆ ଦ୍ୱାରା ବିଶେଷ ଭାବରେ ବଢ଼େ । ପଡ଼ିଆ ଜମିରେ ପ୍ରୟୋଗ କରିବାକୁ ଗଲେ ବହୁତ ଖର୍ଚ୍ଚାନ୍ତ ହେବା କଥା । ସେ ଭଳି ନ କରି ବଳଦର ଖାଦ୍ୟ ସ୍ୱରୂପ ତାହା ବ୍ୟବହାର କରିବା ଉଚିତ । ତାହା ବଳଦର ଉତ୍କୃଷ୍ଟ ଖାଦ୍ୟ । ଜନ୍ତୁମାନେ ତଦ୍ୱାରା ପୁଷ୍ଟ, ସବଳ, ସୁନ୍ଦର ଦେଖାଯାʼନ୍ତି । ପିଡ଼ିଆ ଖିଆ ଜନ୍ତୁଙ୍କ ଗୋବରରେ ଜମି ସୁନ୍ଦର ସାରବାନ୍ ହୁଏ । ଏଭଳି କରିବା ଦ୍ୱାରା ଏକ ସଙ୍ଗରେ ଯେ ଦୋହରି କାର୍ଯ୍ୟ ହୁଏ, ସେଥି ପ୍ରତି କୃଷକର ଦୃଷ୍ଟି ପଡ଼ିବା ଉଚିତ ।

## କଖାସାର

ଧଞ୍ଚିଗଛ, ନୀଳ, ଛଣପଟ ପ୍ରଭୃତି କଖା ସାରରେ ଯାଏ । ଆଜିକାଲି କୃଷକମାନେ ଧଞ୍ଚିଗଛ ବୁଣି ଜମିର ଉର୍ବରତା ବୃଦ୍ଧି କରିବା ଶିକ୍ଷା କରି

ଆସୁଛନ୍ତି । ଧାନକଟା ଉତ୍ତାରେ ଧଣ୍ଡିଗ୍ଧ ବୁଣାଯାଏ, ଓଳପାସ ଠାରେ କଟାଯାଏ । ପ୍ରତି ଏକରକେ ପା ୬୦ ବୁଣ୍ଡୁ ବୁଣାଯାଏ । ଧଣ୍ଡିଗ୍ଧ ଯେ କୌଣସି ଭୂମିରେ ହେଉ ମଧ୍ୟ ଭଲ ବଢ଼େ । ଗୋରୁ ଗାଈ ତାହା ଖା'ନ୍ତି ନାହିଁ । ଶସ୍ୟ କଅଁଳିବାପାଇଁ ଯୋଗ୍ୟସାନ ସାହାଯ୍ୟ କରିଥାଏ । ତାହା ତହିଁରେ ଥିବାରୁ ଧଣ୍ଡିଗ୍ଧ ଉତ୍କୃଷ୍ଟ କମ୍ପୋଷ୍ଟ ସାର ବୋଲି ଧରାଯାଇଅଛି । ଧଣ୍ଡିଗ୍ଧ ଗଛର ଚେର ଭୂମିକୁ ଫଟାଇ ଢିଲା କରୁଥିବାରୁ ଜଳ, ବାୟୁ, ଉତ୍ତାପ ଜମିରେ ଭେଦ ଯେଥି ମଧ୍ୟରେ ଥିବା ଅନିଷ୍ଟକାରୀ କୀଟାଣୁ ନାଶ କରନ୍ତି, ଶସ୍ୟ ବୃଦ୍ଧିପାଇଁ ସାହାଯ୍ୟ କରନ୍ତି । ଧଣ୍ଡିଗ୍ଧସାର ସମ୍ପର୍କରେ କୃଷ୍ଣା ଜିଲ୍ଲାର ଜଣେ କୃଷକ କହନ୍ତି—ଧାନକଟା ଦଶ ଦିନ ଥାଉ ଥାଉ ମୁଁ ଧଣ୍ଡିଗ୍ଧ ଏକରକେ ୧୫ ପାଉଣ୍ଡ ବୁଣିଲି । ଭୂମି ଖାଲ ଢିପ ହୋଇ-ଥିବାରୁ, ବର୍ଷା ଜଳରୁ ଯୋଗୁଁ ବହନ ମାରୁ ପଡ଼ିଲା; ଠାଏ ଠାଏ ଗଛ ଗୋଟିଏ ଗୋଟିଏ ହୋଇ ଉଠିଲା । ପାତଳ ହୋଇ ଗଛ ହେଲେ ମଧ୍ୟ ସେଗୁଡ଼ିକ ପୁରୁଷେ ଲେଖାଁ ବଢ଼ିଥିଲା । ଜ୍ୟୈଷ୍ଠ ମାସରେ ମୁଁ ଚଷ କରି ଧାନ ବୁଣିଲି । ଧଣ୍ଡିଗ୍ଧସାର ପ୍ରୟୋଗ ଯୋଗୁଁ ଏକରକେ ମୋଟେ ଟ ୨୨୫ ଲାଭ ହେଲା ।

ଧଣ୍ଡିଗ୍ଧ ଖତ ପାଇଁ ଏକରକେ କେତେ ଖର୍ଚ୍ଚ ପଡ଼େ ତଳେ ଦିଆଗଲା—

| | |
|---|---|
| ଓଳଓଡ଼ା ଚଷ | ଟ ୪-୦-୦ |
| ୧୫ ପାଉଣ୍ଡ ମଞ୍ଜି | ଟ ୧-୦-୦ |
| ଧଣ୍ଡିଗ୍ଧ ଗଛ କାଟ ହାଣ ପାଇଁ ୩ଜଣ ମୂଲିଆ | ଟ ୧-୦-୦ |
| ଜଗିଆ | ଟ ୧-୦-୦ |
| ଗାଏ | ଟ ୭-୦-୦ |

ନିଜର ହଳ ଥିବା ଲୋକଙ୍କୁ ଚଷ ଖରଚ ଲାଗେ ନାହିଁ । ଜଗାରଖା ପାଇଁ ପ୍ରତି ଗ୍ରାମରେ ଜଗାଳିର ବନ୍ଦୋବସ୍ତ ଥାଏ । ସେଥିପାଇଁ

ପୃଥକ୍‌ରେ ମୂଲ ଦେବା ମଧ୍ୟ ଅନାବଶ୍ୟକ । ପାଣିମଡ଼ାଖରଦ ଉପରେ ଦିଆ ଯାଇ ନ ଥିଲେ ମଧ୍ୟ ଧଣ୍ଡିଗ୍ଧ ଉଠିଥି ପାଇଁ ଆମ ଅଞ୍ଚଳରେ କେବଳ ୪ ୩ ଙ୍କା ଏକରକେ ପଡ଼ିବା କଥା, ଅଧିକ ନୁହେ ।

ଯେତେ ପ୍ରକାର ସାର ପ୍ରୟୋଗ ହେଉ ମଧ୍ୟ ଜଳ ଅଭାବରେ ଶସ୍ୟ ଉଧେଇ ପାରେ ନାହିଁ । ବୃଷ୍ଟି ଜଳରେ ଜମିରେ ବ୍ୟବହୃତ ସାର ଧୋଇ ହୋଇଯାଏ ବୋଲି ଅନେକ କୃଷକଙ୍କ ଧାରଣା; କିନ୍ତୁ ତାହା ଠିକ୍ ନୁହେ । ସାରର ରାସାୟନିକ ଉପାଦାନ ଗୁଡିକ ଜଳରେ ଦ୍ରବଣୀୟ । ସେ ଗୁଡ଼ିକ ମୃତ୍ତିକା ଟାଣି ନେଇ ଶସ୍ୟର ପୁଷ୍ଟି ସାଧନ କରି ଥାଏ । ମୃତ୍ତିକାର ସେତିକି ଶକ୍ତି ନ ଥିଲେ ଜମିରୁ ସାର ଧୋଇ ହୋଇଯାଇ ନିକଟବର୍ତ୍ତୀ କୂପ, ପୁଷ୍କରିଣୀ ପ୍ରଭୃତି ଜଳାଶୟ ଗୁଡ଼ିକ ନଷ୍ଟ କରିପକାନ୍ତା । ଗୋଟିଏ କଥାରୁ ସ୍ପଷ୍ଟ ଯେ, କୌଣସି ଶବ ମୃତ୍ତିକା ଦେହରେ ପୋତା-ଗଲେ ତହିଁରୁ ଦୁର୍ଗନ୍ଧ ଉଠେନାହିଁ । ମୃତ୍ତିକା ଶବର ରାସାୟନିକ ବସ୍ତୁ ଗୁଡିକ ଟାଣୁ ନ ଥିଲେ, ସେ ସମସ୍ତ ଜମି ଉପରେ ସର୍ବଦା ଜମା ରହି ଲୋକ ସମାଜର ଘୋର ଅନିଷ୍ଟ କରୁଥାନ୍ତା । ମୃତ୍ତିକାର ଏଇ ଗୋଟିଏ ପ୍ରଧାନ ଗୁଣ ଥିବାରୁ ଯେ କୌଣସି ସାରର ସାରସ୍ୱତ୍ୱ ଟାଣି ନେଇ ଶସ୍ୟର ପୁଷ୍ଟି ସାଧନ କରିଥାଏ ।

ଦଳ ତେତେ ଉପଯୋଗୀ ପଦାର୍ଥ ନୁହେ ବୋଲି ଲୋକଙ୍କ ଧାରଣା । ତାହା କିନ୍ତୁ ସାର ସ୍ୱରୂପ କେତେକ ସ୍ଥାନରେ ବ୍ୟବହୃତ ହୁଏ । କୃଷ୍ଣା-ଜିଲ୍ଲା ଅନ୍ତର୍ଗତ କଲାହ୍ରଦ ସମୀପସ୍ଥ ଅଞ୍ଚଳରେ କୃଷକମାନେ ପ୍ରଚୁର ପରିମାଣରେ ସାରସ୍ୱରୂପ ଦଳ କେବଳ ବ୍ୟବହାର କରନ୍ତି ।



# ଚାଷ ସଜ (୭)

"If land is in good tilth, it will yield even to a pariya"

ଜମି କର୍ଷଣ କରିବା ଅତି ପ୍ରଧାନ କଥା । ତଦ୍ୱାରା ମାଟି ଫସଫସିଆ ହୁଏ; ଗଛର ଚେର ବହୁତ ଦୂର ପର୍ଯ୍ୟନ୍ତ ପ୍ରବେଶ କରି ଆହାର ଅନ୍ୱେଷଣ କରେ । ବହୁତ ଦୂର ଏବଂ ଗଭୀରକୁ ଚେର ଭେଦ ରହିବା କାରଣରୁ ଗଛ ଜାତ୍ୟପଦ ଏବଂ ଶକ୍ତ ରହେ; ଜଳ, ପବନ, ମୃତ୍ତିକା ଦେହରେ ପ୍ରବେଶ କରି ବୃକ୍ଷକୁ ସତେଜ ରଖିବାରେ ଏବଂ ବୃଦ୍ଧି କରିବାରେ ସାହାଯ୍ୟ କରନ୍ତି । ଉତ୍ତାପ ମୃତ୍ତିକା ଦେହରେ ସହଜେ ପ୍ରବେଶ କରି ଅନିଷ୍ଟକାରୀ କୀଟ ଗୁଡ଼ିକୁ ନାଶ କରି ଥାଏ । ମୃତ୍ତିକା ବେଶୀ ଦିନ ସନ୍ତସନ୍ତିଆ ରହି ବୃକ୍ଷକୁ ଥଣ୍ଡା ରଖେ । ଉପରୋକ୍ତ କାରଣରୁ ଭୂମିକୁ ଭଲ ଭାବରେ ଖୁବ୍ ଗଭୀର ହେବା ପର୍ଯ୍ୟନ୍ତ ଚାଷ କରିବା ଆବଶ୍ୟକ ।

ଆମ ଦେଶରେ ପ୍ରଚଳିତ ଲଙ୍ଗଳ ଯଥେଷ୍ଟ ପରିମାଣରେ ମାଟି ଲେଉଟାଇ ପାରେ ନାହିଁ । ଚାଷ ବେଳେ କୃଷକ କଣ୍ଟି ଉପରେ ଅତି ଜୋରରେ ମାଡ଼ି ବସିବାକୁ ବାଧ୍ୟହୋଇ ଶୀଘ୍ର ଶ୍ରାନ୍ତ ହୁଏ । କିନ୍ତୁ ଗୋଟିଏ ସୁବିଧା—ଦେଶୀ ଲଙ୍ଗଳ ଟ୧୨ଙ୍କାରୁ କମ୍‌ରେ ଘଟେ; ଅଳ୍ପ ଟଙ୍କାର ଦୁର୍ବଳ ବଳଦ ଦ୍ୱାରା ଟଣା ଯାଇପାରେ, ବେଉଷଣ ସମୟରେ ବିଶେଷ ଉପଯୋଗୀ ହୁଏ । ଆମ ଦେଶର ଗରିବ କୃଷକଙ୍କ ଅବସ୍ଥା ଦୃଷ୍ଟିରେ ଦେଶୀ ଲଙ୍ଗଳ ବାସ୍ତବିକ ଉପଯୋଗୀ ।

ଉନ୍ନତ ଧରଣର ଚାଷସଜ ମଧ୍ୟରୁ ଶିବପୁରୀ, ମେଷ୍ଟନ, ଭାଟ ଲଙ୍ଗଳ ଉଲ୍ଲେଖ ଯୋଗ୍ୟ । ଏଗୁଡ଼ିକ ଆକାରରେ ଆମ ଦେଶୀ ଲଙ୍ଗଳ ପରି

ଦେଖାଯାଉ ଥିଲେ ମଧ୍ୟ ତଳ ପତ୍ର ଗୁଡ଼ିକ ଢ଼ଳା ଲୁହାରେ ଗଢ଼ା ହୋଇ ଥାଏ । ସେ ଗୁଡ଼ିକ ସମସ୍ତଙ୍କ ଭାରୀ ଓଜନ ଥିବାରୁ ଅଧିକ ଗଭୀର ପର୍ଯ୍ୟନ୍ତ ମାଟି ଲେଉଟାଇ ପାରନ୍ତି । ଆମ ଦେଶୀ ବଳଦ ସେଗୁଡ଼ିକ ଟାଣିବା କଷ୍ଟ । ଫେରେ ସେଗୁଡ଼ିକର ପତ୍ର ବା ତଳପିଣ୍ଡ ଢ଼ଳା ଲୁହାରେ ଗଢ଼ା ଯାଇଥିବାରୁ ଭାଙ୍ଗିଗଲେ ଗାଁ କମାର କମ୍ବା କୋହୋରଙ୍କ ଦ୍ୱାରା ଯୋଡ଼ା ଯାଇ ପାରେ ନାହିଁ । ଏହି ଲଙ୍ଗଳଗୁଡ଼ିକ ଆମ ଦେଶ କୃଷକଙ୍କ ପକ୍ଷେ ଉପଯୋଗୀ ବୋଲି ଧରା ଯାଇଥିଲେ ମଧ୍ୟ ଉପରୋକ୍ତ କେତେକ ଅସୁବିଧା ସେଥିରେ ରହିଅଛି । ମେଷ୍ଟନ ଲଙ୍ଗଳର ଖରଚ ପ୍ରାୟ ୨୫ଙ୍କା, ଭିଠ ଲଙ୍ଗଳ, ଶିବପୁରୀ ଲଙ୍ଗଳର ଖରଚ ପ୍ରାୟ ୨୭ଙ୍କା ହେଉଅଛି ।

ବର୍ଣ୍ଣିତ ଲଙ୍ଗଳ ମଧ୍ୟରେ ପଞ୍ଜାବ ଲଙ୍ଗଳ ଆମ କୃଷକଙ୍କ ପକ୍ଷରେ ଉପଯୋଗୀ । ଏଥିରେ ଓଯାରଥ ଲୁହାଫାଳ ଯୁକ୍ତ ହୋଇ ଥିବାରୁ ମାଟି ଭଲ ଭାବରେ ଏବଂ ଖୁବ୍ ଗଭୀର ପର୍ଯ୍ୟନ୍ତ ଲେଉଟି ଥାଏ । ଦେଶୀ ଲଙ୍ଗଳ ବ୍ୟବହାର ଦ୍ୱାରା ଦୁଇ ଶିଆର ମଧ୍ୟରେ କଣ୍ଟା କଣ୍ଟା ଭୂମି ଯେଉଁପରି ଅକର୍ଷିତ ରହିଅଛି, ତାହା ଏହି ଲଙ୍ଗଳ ବ୍ୟବହାରରେ ହୁଏ ନାହିଁ । ଦେଶୀ ଲଙ୍ଗଳଲୁହା ବେଳେ ବେଳେ ବଳଦ ଗୋଡ଼ରେ କେଞ୍ଚି ହୋଇ-ଯିବା ଆଶଙ୍କା ଥାଏ, ତାହା ଏଥିରେ ଆଦୌ ରହେ ନାହିଁ । କୃଷକ ମୁଠା ଉଡ଼ କର କଣ୍ଟେ କେ ବଳ ଧରଲେ ଦେଶୀ ଲଙ୍ଗଳ ମାଟି କାଟି ଚାଲେ, କିନ୍ତୁ ଏଥିରେ ଗୋଟିଏ ଲୁହାଚକ ସଂଯୁକ୍ତ ରହିଥିବାରୁ କୃଷକର କୌଣସି ଆୟାସ ହୁଏ ନାହିଁ । ପଞ୍ଜାବ ଲଙ୍ଗଳରେ ଏକ ଓଡ଼ି ଦେଲେ ମାଟି ଯେତେ ଗଭୀରରେ ଲେଉଟି ପାରେ, ଦେଶୀ ଲଙ୍ଗଳରେ ଦଶ ଓଡ଼ି ଦେଲେ ମଧ୍ୟ ମାଟି ତେତେ ଗଭୀରରେ ଲେଉଟେ ନାହିଁ । ଅସୁବିଧା ଏତିକ—ପଞ୍ଜାବ ଲଙ୍ଗଳର ଖରଚ ୨୬ଙ୍କା ପର୍ଯ୍ୟନ୍ତ ପଡ଼େ । ତାହା ଆମ କୃଷକଙ୍କ ପକ୍ଷେ ଅତି ଅଧିକ । ଫେରେ ସେଥିରେ ସଂଯୁକ୍ତ ଢ଼ଳା

ଲୁହାର ଅଂଶଗୁଡ଼ିକ ଭାଙ୍ଗିଗଲେ ମରାମତ କରି ହୁଏନାହିଁ, ନୂଆଁରେ ଖରିଦ କରିବାକୁ ପଡ଼େ ।

ଆମ ଦେଶରେ ଚୂଆଲ ବଳଦ କାନ୍ଧ ଉପରେ ଜନ୍ଦ ହୋଇ ରହୁ ଥିବାର ଅନେକ ସମୟରେ କାନ୍ଧ ଫୁଲେ, ଘା ହୁଏ, ବଳଦକୁ ବେଶୀ କଷ୍ଟ ହୁଏ । ସେଥିରେ ଆଉ ଖଣ୍ଡିଏ କାଠ ଯୋଡ଼ିଦେଲେ ତାହା କାନ୍ଧ ଆଉ ବକ୍ଷ ଉଭୟକୁ ଚାପି ଧରି ବଳଦର କଷ୍ଟ ଅନେକ ପରିମାଣରେ ଲାଘବ କରେ । ଏହିଭଳି ଜୁଆଳ ଅନେକ ସ୍ଥାନରେ ଚଳିଲାଣି ।

ଚାଷପରେ ଜମିକୁ ଅନୁରୂ ୯ ଇଞ୍ଚ ପର୍ଯ୍ୟନ୍ତ ବିଦାରି କୋଡ଼ିଚାଇବା ପାଇଁ 'ଗ୍ରାବର' ନାମକ ଗୋଟିଏ ଯନ୍ତ୍ରଅଛି । ତହିଁରେ ୫ । ୭ ଟା ପର୍ଯ୍ୟନ୍ତ ଦାଡ଼ ଅଙ୍କୁଲ ଲଗୁଥିବାର ଜମି ମଧ୍ୟରେ ୯ ଇଞ୍ଚ ପର୍ଯ୍ୟନ୍ତ ପ୍ରବେଶ କରି ଭୂମିକୁ ଢ଼ିଲା କରେ, ଘାସ ଚେର ସହିତ ବିଦାରି ବାହାର କରିଥାଏ । ତାହା ୫ ୬୦ ଙ୍କାରେ ଗଢ଼ାଯାଇ ପାରେ, ଦୁଇଟା ସବଳ ବଳଦ ଦ୍ୱାରା ଟଣାଯାଏ ।

'ଗ୍ରାବର' ଭଳି ଆଉ ଗୋଟିଏ ଯନ୍ତ୍ର ଅଛି । ତାହାର ଗଠନ ପ୍ରଣାଳୀ ଓ ଆକାର ଭିନ୍ନ ହେଲେ ମଧ୍ୟ ଗ୍ରାବର ବଦଳରେ ତାହା ବ୍ୟବହୃତ ହୁଏ, ଦୁଇଗୋଟି ବଳଦଦ୍ୱାରା ତାହା ମଧ୍ୟ ଟଣାଯାଏ । ଉଭୟ ଯନ୍ତ୍ରର ଦାମ ଏକ ।

'ବାଖର' ନାମକ ଆଉ ଗୋଟିଏ ଯନ୍ତ୍ର ଅଛି । ତାହା ମାନ୍ଦ୍ରାଜ ଅଞ୍ଚଳ କୃଷକମାନେ ବ୍ୟବହାର କରନ୍ତି । ଦୁଇ ଓଡ଼ ଦଅଯିବା ପରେ 'ବାଖର' ବ୍ୟବହାର କଲେ ଏକ ହାତ ଓସାର ଆଉ ତିନ ଇଞ୍ଚ ଗଭୀରରେ ତାହା ମାଟି ସମତୁଲ କରି କରି ଚାଲେ । ତଦ୍ୱାରା ଘାସ ନଷ୍ଟ ହୁଏ, ମାଟି ଗୁଣ୍ଡ ହୁଏ, ଭୂମି ସରିସମାନ ହୁଏ । ତାହାର ଅନ୍ୟନାମ 'କୁଲୁଲ' ।

ବାଇଗଣ, ମରଚ ପ୍ରଭୃତି ବେତ୍ରଷଣ ପାଇଁ ସୁବିଧାଜନକ ଯନ୍ତ୍ରର ପ୍ରଚଳନ ଅଛି । ଖୋଷଣିରେ ଖୋଷି ବୃଥା ଖର୍ଚ୍ଚାନ୍ତ ହେବା ଅପେକ୍ଷା ତାହା ବ୍ୟବହାର କର୍‌ଯାଇ ପାରେ ।

ମଧ୍ୟପ୍ରଦେଶରେ 'ଦୁଣ୍ଡିଆ' ବୋଲି ଆଉ ଏକ ଯନ୍ତ୍ର ଅଛି । ତାହା ମଧ୍ୟ ବେତ୍ରଷଣ ପାଇଁ ଉପଯୋଗୀ । ଦୁଇ ଧାଡ଼ି ଗଛ ମଧ୍ୟରେ ପ୍ରାପ୍ତ ଏକ ହାତ ସ୍ଥାନ ଥିଲେ, ତାହା ବ୍ୟବହାର କରାଯାଇ ପାରିବ ।

ଦେଶୀ କୋଡ଼ିରେ କୋଡ଼ା ଖୋଷା କରିବା ଦ୍ୱାରା କୃଷକ ବେଶୀ ଖର୍ଚ୍ଚାନ୍ତ ହୋଇଥାଏ । ବଲ୍ଲଭ ମାଟି କୋଡ଼ା ଯନ୍ତ୍ର ଅତ୍ୟନ୍ତ ସୁବିଧାଜନକ । ତାହା ମନୁଷ୍ୟ ଦ୍ୱାରା ଟେଣାଯାଏ । ତଦ୍ଦ୍ୱାରା ଅଳ୍ପ ଖର୍ଚ୍ଚରେ ବହୁତ ଭୂମି କୋଡ଼ା ଖୋଷା ହୋଇପାରେ । ମନୁଷ୍ୟ ଟେଣା ଯନ୍ତ୍ର ହେବାରୁ କାର୍ଯ୍ୟ ଠିକ ସିଧାଭାବରେ ହୁଏ । ଯନ୍ତ୍ରଟିରେ ମାଟିଖୋଲା, କୋଡ଼ା, ରାମ୍ପଡ଼ା ପ୍ରଭୃତି ଲୁହା ହତିଆର ଆବଶ୍ୟକ ମତେ ଖଞ୍ଜା ଯାଇପାରେ ।

ବମ୍ବେଇ ଅଞ୍ଚଳର 'ହାନ୍ତ' ଯନ୍ତ୍ରରେ ଏକ ସମୟରେ ମାଟି ଗୁଣ୍ଡ ହୁଏ, ଭୂମି ସମତୁଲ ହୁଏ, ଘାସ ଏକାଠି ହୁଏ, ଖତ ଖେଳେଇ ହୋଇ ଯାଏ । ତାହାର ମୂଲ୍ୟ ୫ ୩ ଙ୍କା ଭିତରେ । ବଳଦ ଦ୍ୱାରା ତାହା ଟେଣା ଯାଏ ।

ଦକ୍ଷିଣ ଆରକାଟ ଜିଲ୍ଲା ଅନ୍ତର୍ଗତ ପାଲୁର ତିନକୋଣିଆ 'ହାରୋ' ନାମକ ଗୋଟିଏ ଯନ୍ତ୍ର ବିକ୍ରି ହୁଏ । ତାହା ବହୁତ ସ୍ଥାନର କୃଷକମାନେ ବ୍ୟବହାର କରୁଥାନ୍ତି । ତଦ୍ଦ୍ୱାରା ଘାସ ଚେର ସବୁ ବାହାର ହୋଇ ଆସେ । ଧାନ ବୁଣା ପରେ ବର୍ଷା ହେଲେ ମାଟି ବସି ଯାଏ, ଧାନ ସହଜରେ ଗଜା ହୁଏ ନାହିଁ । ସେପରି ସମୟରେ 'ହାରୋ' ବ୍ୟବହାର କଲେ ମାଟି ଢ଼ିଲା ହୁଏ; ବୁଣା ଧାନ ଉତ୍ତମରୂପେ ଗଜା ହୁଏ । ପଟୁଆସିଆ ଭୂମିରେ କୋଡ଼ା ବଛା ପୂର୍ବରୁ 'ହାରୋ' ଚଳାଇଲେ କୋଡ଼ା ବଛା କାମ

ଶୀଘ୍ର ଛୁଟିଯାଏ । କୃଷକମାନେ ଏହା ବ୍ୟବହାର କରି ବହୁତ କାର୍ଯ୍ୟ ଅଳ୍ପ ସମୟରେ କରିଥାନ୍ତି, କୋଡ଼ା ଖୋସା ମୂଲ ମୂଲିଆ ଖର୍ଚ୍ଚରୁ ରକ୍ଷାର ପା'ନ୍ତି ।

କେତୋଟି ସୁବିଧାଜନକ କର୍ଷଣ-ଯନ୍ତ୍ରର ସମାଲୋଚନା କରାଗଲା । ଯେଉଁ କେତୋଟିର ଖରଚ ୨୦ ଙ୍କାରୁ ବେଶୀ ନୁହେ ଆମ ଗ୍ରାମ କୃଷକ-ମାନେ ସେଗୁଡ଼ିକ କ୍ରୟ କରି ବ୍ୟବହାର କରି ପାରନ୍ତି; ଯେଉଁ ଗୁଡ଼ିକର, ଖରଚ ଆମ କୃଷକଙ୍କ ସାମର୍ଥ୍ୟରୁ ବଳକା, ସେଗୁଡ଼ିକ ଯେତେ ସୁବିଧାଜନକ ଆଉ ଉନ୍ନତଧରଣର ହେଲେ ମଧ୍ୟ ସେମାନେ ଖରଚ କରିପାରିବେ ନାହିଁ । କୃଷକମାନଙ୍କ ମଧ୍ୟରେ ସହଯୋଗିତା ଥିଲେ ସମସ୍ତେ ମିଶି ୨।୪ଯନ୍ତ୍ର କ୍ରୟକରି ପାଳି ଅନୁସାରେ ବ୍ୟବହାର କରିବା ସୁବିଧା । ପ୍ରତ୍ୟେକ କାର୍ଯ୍ୟ ସହଯୋଗିତାର ଅପେକ୍ଷା ରଖେ । ସହଯୋଗିତା କୃଷକ କୁଳକୁ ଯେ ସର୍ବଦା ନାନା ଅଭାବ ଅସୁବିଧାରୁ ବରାବର ରକ୍ଷା କରିବ, ସନ୍ଦେହ ନାହିଁ ।

---

## ଅନିଷ୍ଟକାରୀ କୀଟାଣୁ

"One insect is sufficient to destroy a thousand putties of paddy"

ଅନେକ ପ୍ରକାର କୀଟ ଶସ୍ୟାଦି ଯେ ନଷ୍ଟ ଭ୍ରଷ୍ଟ କରିଥା'ନ୍ତି, ତାହା କାହାର ଅବିଦିତ କଥା ନୁହେ । କୃଷକମାନେ ଶସ୍ୟାଦି କୀଟ ମୁହଁରୁ ରକ୍ଷା କରିବାକୁ ଯାଇ ଦେବଦେବୀଙ୍କ ନାମରେ କେତେ କଥା କରନ୍ତି, ବ୍ରାହ୍ମଣମାନେ ଅଦ୍ୟାପି ସୁଦ୍ଧା ପୋକଝଡ଼ା କାମ କରିବା ପାଇଁ ଭୂମି ଖାଇ ଆସୁଛନ୍ତି । ବର୍ତ୍ତମାନ ଅବଶ୍ୟ ସେମାନେ ଆଉ ଉକ୍ତ କାର୍ଯ୍ୟ କରନ୍ତି ନାହିଁ । ବୋଧ ହୁଏ ସେମାନଙ୍କ ପୂର୍ବପୁରୁଷମାନେ କରୁଥିଲେ ମାତ୍ର ବୃଥାରେ

ଏମାନେ ଭୂମି ଆସି ଭୋଗ କରି ଆସୁଛନ୍ତି । ଏହି ଧରଣରେ ଦେଖିବାକୁ ଗଲେ ମଫସଲମାନଙ୍କରେ ବୈଦ୍ୟ ପାଇଁ ଭୂମି ଖଞ୍ଜାଥାଏ । ଜଣିତଡ଼ିଆ ଲୋକେ ନାଉରିଆ ପାଇଁ ଭୂମିଖଞ୍ଜି ଥାନ୍ତି, ପୋକଝଡ଼ା ଭୂମିବୋଲି ତ ଖଞ୍ଜାଅଛି । ନାନାମାର୍ଗରେ ଭୂମି ଖଞ୍ଜା ଥାଏ, କୃଷକମାନେ ମାତ୍ର କାହା ଠାରୁ କୌଣସି ଫଳ ପା'ନ୍ତି ନାହିଁ । ମନ୍ତ୍ର, ତନ୍ତ୍ର, ଫୁଙ୍କା, ଝଡ଼ାରେ କୃଷକଙ୍କର ଅଟଳ ବିଶ୍ୱାସ । ସେଥିରେ ଫଳ ନାହିଁ ବୋଲି ଆମେ ଅବଶ୍ୟ କହି ପାରିବୁ ନାହିଁ, କିନ୍ତୁ ସେଭଳି ମନ୍ତ୍ର ଉପାୟ ଜାଣିବା ଲୋକ ଅତି କମ ଅଛନ୍ତି; ଯେଉଁମାନେ ଅବା ଜାଣନ୍ତି, ସେମାନେ କାହାକୁ ଶିଖାନ୍ତି ନାହିଁ । କେଉଁ ବ୍ରାହ୍ମଣ ପଣ୍ଡିତ ଥିଲେ, ମନ୍ତ୍ର ବଳରେ ପୋକ ଝାଡ଼ୁଥିଲେ ବୋଲି ସିନା ଭୂମି ଖଞ୍ଜା ଥିଲା, ତାଙ୍କର ପୁତ୍ର ପୌତ୍ରାଦିମାନେ ତ ପଣ୍ଡିତ ନୁହନ୍ତି, ମନ୍ତ୍ର ଉପାୟ ଜାଣନ୍ତି ନାହିଁ, ସେମାନେ ସେଇ ଉପାୟରେ ପୋକ ଝାଡ଼ିବେ କିପରି ? ସେମାନଙ୍କ ଖଞ୍ଜା ଭୂମି ସେଇ ହେତୁ କାଟିଦେବା ଉଚିତ । କିନ୍ତୁ କୃଷକ ତାହା ବୁଝେ ନାହିଁ । ସେ ଏତିକି ଦାବି କରେ, ଯଦି ସେ ଭୂମି ଖାଉଚି କାର୍ଯ୍ୟ କରୁ । ଅଜ୍ଞ ବ୍ରାହ୍ମଣ କିଛି କରେ କ'ଣ ? ଅନ୍ୟ ଉପାୟ ନ ଦେଖି ଲୋଡ଼ିଲେ ଯାଏ, ତାଳଠାଏ ମାରି ଚାଲିଆସେ । ଅଜ୍ଞ ବ୍ରାହ୍ମଣର ତାଳ ଟିକିକରେ, ଫୁଙ୍କା ଝଡ଼ାରେ କୃଷକ ତୃପ୍ତ ହୁଏ, ମାତ୍ର ପୋକ ନଷ୍ଟ ହୁଅନ୍ତି ନାହିଁ । ଶସ୍ୟ ବରାବର ଭ୍ରଷ୍ଟ ହୋଇଥାଏ ।

ଆଷାଢ଼ ଶ୍ରାବଣ ସବୁକ ଜମି ପୋଠଲ, ଶିମ୍ବ ପ୍ରଭୃତି ବିବିଧ ଶସ୍ୟାଦିରେ ଏକ ପ୍ରକାର ବାଲବାଲୁଆ ପୋକ ଦେଖାଦିଅନ୍ତି । ତହିଁରୁ ଗୋଟିଏ ମାତ୍ର କୌଣସି ଶସ୍ୟର ଲାଗି ଯଦ୍ୟପି ନିଜର ଆହାର ଗ୍ରହଣ କରୁଥାନ୍ତା, ତେବେ ୨୪ ଠା ପତ୍ର ଛଡ଼ା ଯେ କୌଣସି ଫନ୍ଦାର କୌଣସି ଅନିଷ୍ଟ ହୁଅନ୍ତା ନାହିଁ । କିନ୍ତୁ ସେଗୁଡ଼ିକ କୋଟି ସଂଖ୍ୟକ ଦେଖାଯାନ୍ତି, ଶସ୍ୟାଦି

ଏକାବେଳକେ ବିନଷ୍ଟ କରିଥାନ୍ତି । ଦେଶ ତମାମ ପ୍ରଧାନତଃ ଦକ୍ଷିଣ ଆରକାଟ୍, ବଲ୍ଲାରୀ, କର୍ଣ୍ଣୁଲ, କୋଇମ୍ବତୁର ଜିଲ୍ଲାମାନଙ୍କରେ ଏହି ବାଲି-ବାଲୁଆ ପୋକ ଗୁଡ଼ିକର ଦୌରାମ୍ୟ ବେଶୀ ।

ଏହି ପୋକର ୪ ଗୋଟି ଅବସ୍ଥାରେ ତାହାର ଆକୃତି ପ୍ରକୃତି ଭିନ୍ନ । ଉଡ଼ା ପୋକ ଅବସ୍ଥାରେ ସେ ୮୦୦ ଠାରୁ ୧୦୦୦ ପର୍ଯ୍ୟନ୍ତ ଡିମ୍ବ ପାଡ଼େ ।

ଉଡ଼ା ପକ୍ଷୀଟିର ପକ୍ଷଗୁଡ଼ିକ ଶୁକ୍ଳ, ପକ୍ଷଦର୍ଓଟିରେ କେତୋଟା ଛୋପା ଥାଏ । ପୀତ କୃଷ୍ଣବର୍ଣ୍ଣର ଦର୍ଓଟି ଡୋରିଆ ତାହାର ପିଠି ମଧ୍ୟରେ ଦେଖା ଯାଏ । ବିଭିନ୍ନ ଉଦ୍ଭିଦ ପତ୍ର ଦେହରେ ସେ ଅସଂଖ୍ୟ ଡିମ୍ବଦିଏ । ଡିମ୍ବ ଗୁଡ଼ିକର ବର୍ଣ୍ଣ ଶୁକ୍ଳ ପୀତ । ଏକ ସପ୍ତାହ ମଧ୍ୟରେ ଡିମ୍ବରୁ ଛୋଟ ବାଲି-ବାଲୁଆ ପୋକ ଜାତ ହୁଅନ୍ତି । ଏଗୁଡ଼ିକ ଉଦ୍ଭିଦର କୋମଳ ପତ୍ର ଗୁଡ଼ିକ ଖାଇ ଶୂନ୍ୟ କରିପକାନ୍ତି । ଏହି ଅବସ୍ଥାରେ କେବଳ ସେଇ ଗୁଡ଼ିକ ଶସ୍ୟାଦିର ଘୋର ହାନି ଘଟାନ୍ତି । ୩୦।୪୦ ଦିନ ଠାରେ ଏମାନଙ୍କର ଆକାର ଦେଢ଼ଇଞ୍ଚ ଲମ୍ବା ଦେଖାଯାଏ, ଆଉ ଏମାନେ ଉଦ୍ଭିଦ ଜଗତର କୌଣସି କ୍ଷତି ନ କରି ଭିନ୍ନ ଆକାରରେ ଛ ଇଞ୍ଚ ଗଭୀର ମୃତ୍ତିକା ଦେହରେ ରହନ୍ତି । ଏତେବେଳେ ଏଗୁଡ଼ିକର ଆକୃତି ଖର୍ଜୁରି ମଞ୍ଜିପରି ବୋଧ ହୁଏ, ବର୍ଣ୍ଣ ମାଟିଆ ଦେଖାଯାଏ । ଏ ଅବସ୍ଥାରେ ଏ ଗୁଡ଼ିକ ମଲ୍ଲପରି ମାଟି ଭିତରେ ପଶି ରହିଥାନ୍ତି । କେତେମାସ ପରେ ଖରି ଦିନଆ ବର୍ଷାଟାଏ ହେଲେ, ସେଗୁଡ଼ିକ ଦେହରେ ପକ୍ଷ ଲାଗେ, ଫେରେ ସେମାନେ ଉଡ଼ିବୁଲନ୍ତି, ଡିମ୍ବ ପାଡ଼ନ୍ତି ଇତ୍ୟାଦି । ବର୍ଷକୁ ବର୍ଷ ଏଗୁଡ଼ିକର ଜୀବନ ସଂଗ୍ରାମ ଏହିପରି ଚାଲିଥାଏ ।

ବାଲିବାଲୁଆପୋକ ଅବସ୍ଥାରେ ସେଗୁଡିକ ଖାଦ୍ୟ କ୍ଷତି କରନ୍ତି । ସେତେବେଳେ ସେଗୁଡିକର ସଂଖ୍ୟା ଅତି ଅଧିକ ହୋଇ ଥିବାରୁ

ସେଗୁଡ଼ିକୁ ନଷ୍ଟ କରି ହୁଏ ନାହିଁ । ଜ୍ୟେଷ୍ଠ ଆଷାଢ଼ରେ ଉଡ଼ା ପକ୍ଷୀ ଅବସ୍ଥାରେ ସେଗୁଡ଼ିକ ଦେଖାଦେବାବେଳେ କୃଷକମାନେ ସେଗୁଡ଼ିକୁ ନଷ୍ଟ କରିଦେଉଥିବା ଉଚିତ । ଏଥିପାଇଁ କୃଷକଙ୍କ ମଧ୍ୟରେ ଏକତା ଆବଶ୍ୟକ । ଗୋଟିଏ ଅଞ୍ଚଳର କୃଷକମାନେ ଏକ ମନରେ ସେଗୁଡ଼ିକୁ ନଷ୍ଟ କରି ବସିଲେ ଅନ୍ୟ ଅଞ୍ଚଳର କୃଷକମାନେ ଯଦ୍ୟପି ତାହା ନ କରନ୍ତି, ତଥାପି ସେଗୁଡ଼ିକର ବଂଶ ବୃଦ୍ଧି ପାଇ କ୍ରମଶଃ ଫେରେ ବ୍ୟାପି ଯିବା ବଡ଼ କଥା ନୁହେଁ । ପ୍ରଥମେ କୃଷକମାନେ ନିଜ ନିଜ ମଧ୍ୟରେ ଏକତା ରକ୍ଷା କରି ନିମ୍ନ ଉପାୟମାନ ଅବଲମ୍ବନ କରିବା ଉଚିତ ।

୧ ଶୁଖିଲା ଥିବା କାଠରୁ ସେଗୁଡ଼ିକୁ ସହଜେ ବାରି ହୁଏ । ସୂର୍ଯ୍ୟ-ଅସ୍ତ ସମୟରେ ସାଧାରଣତଃ ସେଗୁଡ଼ିକ ଉଡ଼ି ବୁଲନ୍ତି । କୃଷକ ବାଳକ ବାଳିକାମାନେ ସେଗୁଡ଼ିକୁ ଧରି ପୋଡି ପୋଡ଼ିଦେବା ଦ୍ୱାରା ସେଗୁଡ଼ିକର ବଂଶ ନିପାତ ହୋଇଥାଏ ।

୨ ମାଛି ଅନ୍ଧାରବେଳେ ସେଗୁଡ଼ିକ ଦେଖାଯାଉ ଥିବା ସ୍ଥାନ-ମାନଙ୍କରେ ନିଆଁ ପୋଡି ଦେଲେ ଝାଙ୍କ ଝାଙ୍କ ହୋଇ ସେଗୁଡ଼ିକ ଜମା ହୁଅନ୍ତି । ସେତିକିବେଳେ ସେଗୁଡ଼ିକୁ ଧରି ନଷ୍ଟ କରିବା ସହଜ । ଗୋଟିଏ ଉଡ଼ାପକ୍ଷୀ ୮୦୦ । ୧୦୦୦ ପର୍ଯ୍ୟନ୍ତ ବାଲିବାଲୁଆ ପୋକ ସୃଷ୍ଟି କରୁଥିବା ହେତୁ 'ମୂଳରୁ ମାଇଲେ ଯାଏ ସରି' ନୀତି ଅବଲମ୍ବନ କରିବା ଶ୍ରେୟସ୍କର ।

୩ ଯେଉଁ ଭୂମିରେ ଏଗୁଡ଼ିକର ଦୌରାତ୍ମ୍ୟ ଜଣାଯାଇଥାଏ, ସେଇ ଜମି ଝରିକାଳରେ ଚଷିଦେଲେ ଖର୍ଜୁର ମଞ୍ଜି ଆକାରରେ ଭୂମି ଭିତରେ ପଶି ରହିଥିବା ପୋକ ଗୁଡ଼ିକ ପଦାରେ ପଡ଼ିଯାନ୍ତି । ତା'ପରେ ଖରା ତାପରେ, ପକ୍ଷୀ ମୁହଁରେ, ଦଳାଦଳିରେ ସେଗୁଡ଼ିକର କ୍ଷୟ ହୋଇଥାଏ ।

ପୋକର ଗୃହ ଅବସ୍ଥା କୃଷକ ବୁଝି ରଖି ଉପରୋକ୍ତ ଉପାୟ ଅବଲମ୍ବନ କଲେ ଯାଇ ରକ୍ଷା । ତାହା ନ କରି ଅଶିକ୍ଷିତ ଲୋକଙ୍କ ଉକ୍ତିରେ ପଡ଼ି ତନ୍ତ୍ରମନ୍ତ୍ର ପୂଜାବନ୍ଧ କରି ବସିଲେ ପୋକ ବଂଶ ବୃଦ୍ଧି ପାଏ, ଫସଲ ନଷ୍ଟ ହୁଏ । ଧାନ୍ୟ ପୋକ—ଏଗୁଡ଼ିକ ହଠାତ୍ ଦେଖାଦେଇ ଶସ୍ୟାଦି ଅମୂଳ ନଷ୍ଟ କରନ୍ତି, ଯଥା ଶୀଘ୍ର ଅଦୃଶ୍ୟ ହୁଅନ୍ତି । ଏଗୁଡ଼ିକର ମଧ୍ୟ ୪ ଅବସ୍ଥା ଅଛି । ଉଡ଼ା ପକ୍ଷୀ ଅବସ୍ଥାରେ ଏଗୁଡ଼ିକ ୧୦୦ । ୪୦୦ ପର୍ଯ୍ୟନ୍ତ ଡିମ୍ବ ପାଡ଼ନ୍ତି । ଡିମ୍ବରୁ ଲମ୍ବା ଲମ୍ବା ପୋକ ଜାତ ହୋଇ ଶସ୍ୟାଦି ଏକାବେଳକେ ଭକ୍ଷଣ କରନ୍ତି । ଛୋଟ ସମୟରେ ଏଗୁଡ଼ିକର ବର୍ଣ୍ଣ ନୀଳ, ବଢ଼ିଗଲା ପରେ ବର୍ଣ୍ଣ କଳା ହୋଇ ପଡ଼େ । ବୁଢ଼ା ପୋକ ଗୁଡ଼ିକ ଏକ ଇଞ୍ଚ ପର୍ଯ୍ୟନ୍ତ ଲମ୍ବା । ସେଗୁଡ଼ିକ ଫସଲ କ୍ଷତି କରିବା ପ୍ରକୃତ ଛାଡ଼ି ଭୂମି ଭିତରେ ପଶି ରହନ୍ତି । ସେଠାରେ ସେଗୁଡ଼ିକର ଆକାର ବଦଳେ, ଖର୍ଜୁରି କୋଳଂଭଳି ଦିଶନ୍ତି । ୭ । ୮ ଦିନ ମଧ୍ୟରେ ସେଥିରେ ପକ୍ଷ ଲାଗେ, ଉଡ଼ା ପୋକ ଅବସ୍ଥାରେ ସେମାନେ ଡିମ୍ବ ପାଡ଼ନ୍ତି ।

ସାଧାରଣତଃ କାଉ, ପାରା ପ୍ରଭୃତି ପକ୍ଷୀମାନେ ଏହି ପୋକଗୁଡ଼ିକ ଧରି ଖାʼନ୍ତି । କୋଳ ମଞ୍ଜି ଆକାରରେ ଏଗୁଡ଼ିକ ଭୂମି ମଧ୍ୟରେ ଥିବାବେଳେ ସୂର୍ଯ୍ୟ ଉତ୍ତାପରେ ସେଗୁଡ଼ିକର ବଂଶ ଲୋପ ପାଇଯାଏ ।

୨ । ୪ ଗଛ ମଧ୍ୟରେ ଅଳ୍ପ ସଂଖ୍ୟକ ପୋକ ପ୍ରଥମେ ହୋଇ ହୋଇ କ୍ରମଶଃ ବହୁ ସ୍ଥାନ ବ୍ୟାପନ୍ତି । ପୋକ ଲାଗୁ ଲାଗୁ କୃଷକମାନେ କ୍ଷେତ ମଧ୍ୟରେ, ପୋକଗୁଡ଼ିକ ବାହାରି ନ ପାରିବା ଭଳି ଗୋଟା କେତେ ଛୋଟ ଖାତ ଖୋଳିଦେବା ଆବଶ୍ୟକ । ପ୍ରତି ଖାତରୁ ପୋକଗୁଡ଼ିକ ଟିଫରେ ଧରି ନେଇ ପୋତି ପୋଡ଼ି ନଷ୍ଟ କରିବା ଉଚିତ । କେତେକ ସ୍ଥାନରେ କୃଷକମାନେ ଏହି ଉପାୟ ଅବଲମ୍ବନ କରି ଅନିଷ୍ଟକାରୀ କୀଟାଣୁ ଉପଦ୍ରବରୁ ରକ୍ଷା ପାଉଛନ୍ତି ।

## କେତେକ ସୂକ୍ଷ୍ମ ପୋକ ଛଡ଼ା ଉପାୟ

ନାନା ପ୍ରକାର କୀଟ ସକଳ ପ୍ରକାର ଫଳ ମୂଳ ବୃକ୍ଷାଦିରେ, କୋବି ଆଉ ଯେ କୌଣସି ପ୍ରକାର ଶାକ୍‌ସବଜି ଫସଲରେ ଲାଗି ଭ୍ରଷ୍ଟ କରିପକାନ୍ତି । ନିମ୍ନ କେତେକ ସୂକ୍ଷ୍ମ ଉପାୟରେ ଯେ କୌଣସି ପ୍ରକାର ଫସଲ ରକ୍ଷା କରିଯିବ—

୧ କର୍ବଲିକ, କାଠ, ସାବୁନ ଏକାଠି କରି ସେଚନ କଲେ ପୋକ ଛାଡ଼ି ଚାଲିଯାନ୍ତି, ମରନ୍ତି । କାଠ ସାବୁନ୍ ଜଳରେ ମିଶ୍ରଣ କରି ଗାଈ ଗୋରୁ ପ୍ରଭୃତି ପଶୁଙ୍କୁ ଗାଧୁଆ ପାଧୁଆ କଲେ ପଶୁ ଦେହରେ ଲାଗୁଥିବା ଅନିଷ୍ଟକାରୀ କୀଟାଣୁମାନ ଛାଡ଼ିପଡ଼ନ୍ତି ।

୨ ଧୂଆଁ, କାଠ ସାବୁନ୍ ଏକ ଭାଗରେ ୮ ଭାଗ ପର୍ଯ୍ୟନ୍ତ ଜଳ ଦେଇ ସିଝାଇ ଦେବାକୁ ହେବ । ସେଇ ଫୁଟାପାଣି ସେଚନରେ ପୋକ-ମାନେ ନାଶ ଯା'ନ୍ତି । ଫଳପୂର୍ଣ୍ଣ ଗଛ ଏଇ ଉପାୟରେ କୀଟ ମୁହଁରୁ ରକ୍ଷା କରିବା ଉଚିତ । ପ୍ରଥମ ଉପାୟରେ ଦୁର୍ଗନ୍ଧ ଉଠେ ।

୩ ଧୂଆଁ ଗୁଣ୍ଡରେ ପୋକବଂଶ ନିପାତ ହୁଅନ୍ତି ।

୪ ଖାଲି ଜଳରେ କାଠସାବୁନ୍ ମିଶ୍ରଣ କରି ସେଚନ କଲେ କୀଟମାନେ ଦୂର ହୁଅନ୍ତି ।

୫ ଗନ୍ଧକ, କର୍ପୂର, ପାଉଁଶ ଏକତ୍ର କରି ବିଞ୍ଚିଲେ କୀଟ ଆକ୍ରମଣରୁ ଶସ୍ୟ ରକ୍ଷା ପାଇଥାଏ ।

୬ ଗୁଗ୍ଗୁଲ, ଯୋଡ଼ା ଜଳ ଦେଇ ଫୁଟାଇ ଦେବା ପରେ ସେଇ ଫୁଟା ଜଳ ଶସ୍ୟାଦିରେ ସିଞ୍ଚିଲେ ପୋକମାନେ ନଷ୍ଟ ହୁଅନ୍ତି । ଗୁଗ୍ଗୁଲ, ଯୋଡ଼ା ଧୂପ ମଧ୍ୟ ଦିଆଯାଏ ।

୭ ମାଛତେଲ, ଗୁଡ଼୍ ଲ, ସାବୁନ୍—ଏ ତିନି ପଦାର୍ଥରେ କୀଟାଣୁ ମୁହଁରୁ ଶସ୍ୟାଦି ରକ୍ଷା କରାଯାଏ ।

୮ ଗନ୍ଧକ, ଧୂଆଁପତ୍ର ପାଣି, ଚୀଙ୍ଗଣା ମିଶ୍ରଣ କରି ସିଞ୍ଚିଲେ ପୋକ ଛାଡ଼ିଯାଏ ।

୯ ହିଙ୍ଗୁ ପାଣିରେ ଉଇ ଛାଡ଼ିଥାଏ ।

ପ୍ରଚଳିତ ଉପାୟ

୧ ଉତ୍ତମ କର୍ଷଣ—ଏତଦ୍ୱାରା ପୋକବଂଶ ନଷ୍ଟ ହେବା କଥା କହିବା ସରଳ । ତାହା ମଧ୍ୟ ପ୍ରଚଳିତ ରୀତି । ଗ୍ରୀଷ୍ମ ଋତୁରେ ଆଗୁଆ ହେବା ଦରକାର । ଆମର ଦେଶୀ କାଠ ଲଙ୍ଗଳରେ ଉଦ୍ଦେଶ୍ୟ ତେତେ ଚରିତାର୍ଥ ହୁଏ ନାହିଁ, ହୁଏ ଲୁହା ଲଙ୍ଗଳରେ । ଲୁହା କର୍ଷଣ ଯନ୍ତ୍ରରେ ୭ । ୮ ଇଞ୍ଚ ପର୍ଯ୍ୟନ୍ତ ମାଟି ଲେଉଟିଥାଏ । ମୃତ୍ତିକା ଦେହରେ ଘରକରି ରହିଥିବା କୀଟମାନେ ଉଦାକୁ ବାହାରିପଡ଼ନ୍ତି, ବୈଶାଖ ଝାଞ୍ଜିରେ ମରନ୍ତି, କେତେ ପକ୍ଷିମାନଙ୍କ ଖାଦ୍ୟ ହୁଅନ୍ତି, ଥୋକେ ତଳେ ପୋତି ହୋଇ ମରନ୍ତି, ବଞ୍ଚିଥିଲେ ମଧ୍ୟ ଉପରକୁ ଉଠିବା ପାଇଁ ସମୟ ଲାଗେ ।

୨ ଭିନ୍ନଶସ୍ୟ—ଏକ ଭୂମିରେ ଅନେକ ଦଫା ସେଇ ଏକ ଖନ୍ଦ କଲେ କୀଟ ବଂଶ ବୃଦ୍ଧି ପାଏ । ଏକ ଜାତିର ଗଛରେ ଲାଗିବା କୀଟ ଅନ୍ୟ ଜାତୀୟ ଗଛରେ ଲାଗନ୍ତି ନାହିଁ । ଅନ୍ୟ ପ୍ରକାର ଗଛ ଅନ୍ୟ ପ୍ରକାର କୀଟର ଖାଦ୍ୟ ହୋଇପାରେ । ତେବେ ଗୋଟିଏ ପ୍ରକାର କୀଟର ବଂଶ ଲୋପ ହୋଇ ଆଉ ଅନ୍ୟ ଜାତୀୟ କୀଟର ବଂଶ ବୃଦ୍ଧିପାଇବା ପାଇଁ ସମୟ ଲାଗେ । ଅନେକ ସ୍ଥାନରେ କୃଷକମାନେ ଏହି ରୀତିରେ କାର୍ଯ୍ୟ କରନ୍ତି, କୀଟ ମୁହଁରୁ ଶସ୍ୟାଦି ରକ୍ଷା କରନ୍ତି ।

୩ ସାର ପ୍ରୟୋଗ—କୃଷକମାନେ ଭଲ ଅମଳ ଉଦ୍ଦେଶ୍ୟରେ ସାର ପ୍ରୟୋଗ କରିଥାନ୍ତି । କିନ୍ତୁ ସେଥିରେ ଦୋବଧ ଉଦ୍ଦେଶ୍ୟ ସାଧିତ

ହୁଏ । ସାର ପ୍ରୟୋଗରେ ଗଛ ପୁଷ୍ଟ ସତେଜ ହେବା କଥା; ପୁଷ୍ଟ ଗଛରେ ସାଧାରଣତଃ ପୋକ ଲାଗନ୍ତି ନାହିଁ ।

୪ ପାଣିମଡ଼ା—ଭୂମି ବତର ନ ଥିଲେ ତ ପାଣି ମଡ଼ାଯାଏ; ପୋକ ଘେଉଡ଼ିବା ଉଦ୍ଦେଶ୍ୟରେ ଅନେକ ସ୍ଥାନରେ ମଧ୍ୟ ପାଣି ମଡ଼ାନ୍ତି । ତଦ୍ୱାରା ଝିଟିକା, ଝିଁ ଝିଁ ପୋକ, ଭୂମି ଫାଟରେ ଥିବା ଯେ କୌଣସି ଅନିଷ୍ଟକାରୀ କୀଟମାନେ ନଷ୍ଟ ହୁଅନ୍ତି, ପାଣି ମାଡ଼ୁ ମାଡ଼ୁ ଟେଳେ ଉଡ଼ି ଚାଲିଯା'ନ୍ତି । ଉଡ଼ି ଚାଲିଯାଉଥିବା କୀଟମାନେ ଚଢ଼େଇ, କାଉ ପ୍ରଭୃତି ପକ୍ଷୀମାନଙ୍କର ସଙ୍ଗେ ସଙ୍ଗେ ଆହାର୍ଯ୍ୟ ହୋଇଥାନ୍ତି ।

କର୍କଟ ଧରିବା ଉପାୟ

'କଙ୍କଡ଼ା' ଯୋଗୁଁ ଧାନ ଖନ୍ଦର ବିଶେଷ କ୍ଷତି ହୁଏ । ଧାନ ଗଛ କଅଁଳ ଉଠୁ ଉଠୁ କଙ୍କଡ଼ାମାନେ ସେଗୁଡ଼ିକ କାଟିପକାନ୍ତି । ଗୋଟିଏ ସହଜ ଉପାୟରେ ବିଲରୁ ସେଗୁଡ଼ିକ ବାହାର କରାଯାଏ ।

ତାହା ଏହି—

ଗୋଟିଏ ଗୋଟିଏ ମାଟି ମାଠିଆରେ କାଦୁଅ ପୂର୍ତ୍ତି କରି ଜମିର ବିଭିନ୍ନ ଅଂଶରେ ପୋତିଦେବାକୁ ହେବ । ଦରଭଜା କୁଣ୍ଡା ଦୁଇ ମୁଠା ସେଥିରେ ଛାଡ଼ି ଦେଲେ ସେହି ଗନ୍ଧରେ କର୍କଟମାନେ ଆକୃଷ୍ଟ ହୋଇ ଆସି ମାଠିଆରେ ପଡ଼ନ୍ତି, ଉଠି ଯାଇ ପାରନ୍ତି ନାହିଁ । ସେଗୁଡ଼ିକୁ ଧରି ନେଇ ପୋତିଦେଲେ, ସେମାନଙ୍କ ପ୍ରାଣ ନଷ୍ଟ ହୁଏ । ପ୍ରତି ଦିନ କଙ୍କଡ଼ା ମାଠିଆ ଦେହରୁ ବାହାର କରି ଦରଭଜା କୁଣ୍ଡା ଦୁଇ ଦୁଇ ମୁଠା ସେଥିରେ ବାଣ୍ଟି ଦେଉଥିବା ଦରକାର । ମାଠିଆ ଭିତରେ ମୂଷକମାନେ ମଧ୍ୟ ପଡ଼ିଯାନ୍ତି ।

ସହଯୋଗିତା

କୃଷକମାନଙ୍କ ମଧ୍ୟରେ ସହଯୋଗିତା ଯେ ଅତି ପ୍ରଧାନ କଥା, ତାହା ଏକାଧିକ ଥର କହା ସରିଛି । ଅନିଷ୍ଟକାରୀ କୀଟାଣୁମୁଖରୁ ଶସ୍ୟାଦି

ରକ୍ଷା କରିବା ପାଇଁ ମଧ୍ୟ ସର୍ବ ପ୍ରଥମେ କୃଷକଙ୍କ ମଧ୍ୟରେ ସହଯୋଗିତା ଆବଶ୍ୟକ ହୁଏ । ତାହା ନ ହେଲେ ଏକ କୃଷକର ବହୁ ଚେଷ୍ଟା ପ୍ରତିବେଶୀ କୃଷକର ଔଦାସୀନ୍ୟରେ ବୃଥା ହୁଏ । ଦଶ ଏକର ଭୂମି ମଧ୍ୟରୁ ଆଠ ଏକର ଭୂମିର ଲୋକ ପୋକଡଡ଼ା ଉପାୟ କଲେ ଯଥେଷ୍ଟ ହୁଏ ନାହିଁ । ଅବଶିଷ୍ଟ ଦୁଇ ଏକର ଭୂମି ସମ୍ପର୍କୀୟ ରୟତମାନେ ମଧ୍ୟ ସେମାନଙ୍କ ଭୂମିରୁ ପୋକ ଘଡାଇବା ପାଇଁ ସେଇ ସମୟରେ ଯତ୍ନନେବା ଉଚିତ । ତା' ନ ହେଲେ ଦୁଇ ଏକର ଭୂମିରୁ କୀଟମାନେ କ୍ରମଶଃ ପାଖ ପଡିଶା ଭୂମିରେ ବ୍ୟାପିଯାଇ ସମସ୍ତଙ୍କ ଖନ୍ଦ ଭ୍ରଷ୍ଟ କରିପକାନ୍ତି । କୃଷକମାନେ ସେଇ ହେତୁ ଏକ ମନରେ କୀଟ ନାଶ କରିବା ପାଇଁ ଯେ କୌଣସି ଉପାୟ ଏକ ସମୟରେ କରୁଥିବା ବାଞ୍ଛନୀୟ ।



## ଗୋ ପାଳନ (୮)

Property is the strength of man, food that of a beast.''

ଗୋରୁ ଗାଈ ଷଣ୍ଢଙ୍କୁ ହିନ୍ଦୁମାନେ ଦେବଦେବୀ ସ୍ୱରୂପ ମାନନ୍ତି । ମାନିବା ପାଇଁ ବହୁତ କାରଣ ଅଛି । ଦେବ ଦେବୀ ଲୋକଙ୍କ ଉପକାର କରନ୍ତି ବୋଲି ମନୁଷ୍ୟ କେବଳ ଶୁଣେ, କିନ୍ତୁ ଗୋକୁଳ ପ୍ରତ୍ୟକ୍ଷ ଦେବ ଦେବୀ ଭଳି ମନୁଷ୍ୟ ସମାଜର ଯେ ବରାବର ଉପକାର କରି ଆସୁଛନ୍ତି, ତାହା ଅନୁଭୂତିର କଥା । ଷଣ୍ଢ ଗୋକୁଳ ବୃଦ୍ଧି କରେ; ଗାଈ କ୍ଷୀର, ଘିଅ, ଦହି, ଛେନା ପ୍ରଭୃତି ଦିଏ; ଗୋରୁ ମନୁଷ୍ୟ ସମାଜକୁ ପୋଷି ରଖିଥାଏ । ତଥାପି ମନୁଷ୍ୟ ଗୋକୁଳକୁ ପୋଷିବା ପାଇଁ ଯେଉଁ ବ୍ୟବସ୍ଥା କରୁଛି, ତାହା ମନୁଷ୍ୟୋଚିତ ହେଉ ନାହିଁ ।

ଷଣ୍ଢ—ବାଛୁରି ନ ଥିଲେ ଗାଈ କ୍ଷୀର ଦଏ ନାହିଁ ବୋଲି ବାଛୁରି ଅବସ୍ଥାରେ ଷଣ୍ଢର ଏକ ବର୍ଷ ଯାଏ ଗୁହାଳରେ ମାତ୍ର ସ୍ଥାନ, ତାପରେ ତାହାର ଆଉ କେଉଁଠାରେ ମୁଣ୍ଡ ଗୁଞ୍ଜି ରହିବା ପାଇଁ ସ୍ଥାନ ନ ଥାଏ, ଖାଦ୍ୟ ବୋଲି ମୁଠାଏ ଘାସ କିଏ ଦିଏ ନାହିଁ । ଷଣ୍ଢ ପ୍ରତି ଏତେ ଅନାଦର କାହିଁକି ? ଷଣ୍ଢ ମହାଦେବଙ୍କ ବାହନ; ସେଇ ହେତୁ ତାକୁ ଛାଡ଼ି ଦିଆଯାଏ, ଶଗଡ଼ ଯୋଚାଯାଏ ନାହିଁ, ହଳ କରାଯାଏ ନାହିଁ । ମନୁଷ୍ୟର କୌଣସି ପ୍ରୟୋଜନକୁ ଆସେ ନାହିଁ ବୋଲି ଷଣ୍ଢ ପ୍ରତି ସମସ୍ତଙ୍କ ଅନାଦର ଦେଖାଯାଏ । ଗୋଟିଏ ଗୋଟିଏ ଗାଁରେ ସହସ୍ର ସଂଖ୍ୟକ ଗାଈ ରହୁଥିଲେ ମଧ୍ୟ ଗୋଟିଏ ହେଲେ ଷଣ୍ଢ ନ ଥାଏ । ଗାଈପଲ ଥିବା ଗାଁ-ମାନଙ୍କରେ ଏକାଧିକ ଷଣ୍ଢ ପୋଷାଯିବା ନିତାନ୍ତ ଆବଶ୍ୟକ । ତା' ନ ହେଲେ ପଶୁପଲ ବୃଦ୍ଧିରେ ବାଧା ଘଟିବା କଥା, ଅନ୍ୟ ମାର୍ଗରେ ବୃଦ୍ଧି ପାଇଲେ ମଧ୍ୟ ପଶୁପଲ ତେତେ ହୃଷ୍ଟପୁଷ୍ଟ, ସବଳ, ସୁନ୍ଦର ଦେଖାଯିବା ଅସମ୍ଭବ । ଉପଯୁକ୍ତ ଷଣ୍ଢ ଅଭାବରୁ କୃଷକମାନଙ୍କର ଯେ ଗୁରୁତର କ୍ଷତି ହୁଏ, ତାହା ସେମାନେ ବୁଝିବା ଦରକାର । ଆମେରିକାର କୃଷକମାନେ ତାହା ବୁଝନ୍ତି । ସେଠାରେ ଷଣ୍ଢ ଗୋଟିକର ଖରଦ ୧୬ ସହସ୍ର ପାଉଣ୍ଡ ପର୍ଯ୍ୟନ୍ତ ହୁଏ । ଷଣ୍ଢ ଯୋଗୁଁ ସେଠାରେ ଗାଈ, ବଳଦ, ବାଛୁରି ପୁଷ୍ଟ ସବଳ ଏବଂ ମୂଲ୍ୟବାନ । ଗୋଟିଏ ଗୋଟିଏ ଗାଁର କୃଷକମାନେ, ସମସ୍ତେ ଏକତ୍ର ମିଶି ଗାଈ ସଂଖ୍ୟା ଅନୁପାତରେ ଏକ ବା ଏକାଧିକ ଷଣ୍ଢ ପୋଷିବା ଆବଶ୍ୟକ । ଷଣ୍ଢ ଗାଁ କୃଷକ ସମସ୍ତଙ୍କ ସମ୍ପତ୍ତି ହେବା କାରଣରୁ ସମସ୍ତଙ୍କ ବ୍ୟୟରେ ତାହା ସକାଶେ ଗୁହାଳ, ଖାଦ୍ୟପାନର ଯୋଗାଡ଼ କରାଯାଉ ଥିବା ଉଚିତ ।

ଗାଈ—ଲୋକେ ଗାଈ ପୋଷନ୍ତି କ୍ଷୀର ଆଶାରେ । ଦରିଦ୍ର ଲୋକେ ମଧ୍ୟ ଏକାଧିକ ଗାଈ ପୋଷି କ୍ଷୀର ମହାକ ବିକାବିକ କରି ପୋଷି

ହୁଅନ୍ତି । ଗାଈଯେଉଁ ଯାହା ଉପାର୍ଜ୍ଜନ ହୁଏ, ତାହାର ଏକ ଚତୁର୍ଥାଂଶ ଲୋକେ ଗାଈର ଖାଦ୍ୟରେ ବ୍ୟୟ କରୁଥିବା ଉଚିତ ନୁହେଁ କି ? ତାହା ହୁଏ ନାହିଁ । ଅନେକ ଲୋକ ଭୁଆଁର ସଂଖ୍ୟକ ଗାଈ ରଖନ୍ତି ଜମି ଉର୍ବର କରିବା ଉଦ୍ଦେଶ୍ୟରେ । ଭୁଆଁର ଗୋଷ୍ଠକରେ ଶତାଧିକ ଗାଈ ରହନ୍ତି, କିନ୍ତୁ ଏଗୁଡ଼ିକର ଅବସ୍ଥା ଦେଖି ହୁଏ ନାହିଁ । ଖାଦ୍ୟ ବୋଲି ସେମାନଙ୍କୁ କିଛି ଦିଆ ଯାଏ ନାହିଁ, ରହିବା ପାଇଁ କୌଣସି ପ୍ରକାର ବାସ ସେମାନଙ୍କ ସକାଶେ ନ ଥାଏ । ବଣ, ପର୍ବତ, ତୋଟା ପଡ଼ିଆରେ କେବଳ ବୁଲି ବୁଲି ଯାହା ପା'ନ୍ତି, ତାହାହିଁ ସେମାନଙ୍କ ଖାଦ୍ୟ ହୁଏ । ବର୍ଷା, ଶୀତ, ଖରାରେ ମୁଣ୍ଡ ଗୁଞ୍ଜିବା ପାଇଁ ଗଛ, ଢିମିରିଖୋଲି ବ୍ୟତୀତ ସେମାନଙ୍କ ସକାଶେ ଅନ୍ୟ ବ୍ୟବସ୍ଥା ନାହିଁ । ଗାଈ ଗୁଡ଼ାଏ ରଖି ମନୁଷ୍ୟ ପ୍ରତି ମୁହୂର୍ତ୍ତରେ କି ଘୋର ପାପ ଅର୍ଜ୍ଜନ କରେ, କହିବା ବାହୁଲ୍ୟ । ଅନଳରେ ଖର୍ବ ଖର୍ବ ପତଙ୍ଗ ଜୀବନ ବିସର୍ଜ୍ଜନ ଦେବାଭଳି ବର୍ଷାକାଳରେ ଖର୍ବ ଖର୍ବ ଗାଈ ଜୀବନ ତ୍ୟାଗ କରି ଥା'ନ୍ତି । ପତଙ୍ଗମୃତ୍ୟୁ ପାଇଁ ମନୁଷ୍ୟକୁ ଦାୟୀ ବୋଲି ନ ଯାଇ ପାରେ, କିନ୍ତୁ ଗାଈଙ୍କ ଅକାଳ ମୃତ୍ୟୁ ପାଇଁ ମନୁଷ୍ୟ ବରାବର ଦାୟୀ । ପଲ ପଲ ଗାଈ ରଖି ବର୍ଷାକାଳରେ ଅନ୍ତତଃ ମୁଣ୍ଡ ଟେକି ରହିବା ପାଇଁ, ସେମାନଙ୍କ ନିମନ୍ତେ ଖଣ୍ଡିଏ ବାସର ହେଉ ଯୋଗାଡ଼ ନାହିଁ ! ଗ୍ରୀଷ୍ମକାଳରେ ପର୍ବତ, ପାହାଡ଼, ବିଲବାଡ଼ି ପ୍ରଭୃତିରେ କଳେ ଘାସ ଗୋରୁଙ୍କୁ ମିଳିବା କଷ୍ଟ ହୁଏ । ସେମାନେ ବୁଲି ଆସିବା ପରେ ଥରେ ହେଉ ମଧ୍ୟ ମୁଠାଏ ମୁଠାଏ ପାଲ ସେମାନଙ୍କ ମୁହଁରେ ଦେବାଭାବ ମନୁଷ୍ୟର ହୃଦୟସ୍ପର୍ଶ କରେ ନାହିଁ । ଏହା ହେଉଛି ଭୁଆଁରିଆ ଗାଈ ପ୍ରତି ମନୁଷ୍ୟର ଅତ୍ୟାଚାର ! ଗୋମାତା ପ୍ରତି ମନୁଷ୍ୟର ଏତାଦୃଶ ଅତ୍ୟାଚାର ଅଧିକ କାଳ ଚାଲିଲେ ଖର୍ବ ଖର୍ବ ଗୋମାତାଙ୍କ କ୍ଷୟ ସଙ୍ଗେ ସଙ୍ଗେ ମନୁଷ୍ୟ ସମାଜର କ୍ଷୟ ସୁଦ୍ଧା ଅବଶ୍ୟମ୍ଭାବୀ

ଭାରତର ଦକ୍ଷିଣାଞ୍ଚଳ ଅନ୍ଧ୍ର ମଧ୍ୟପ୍ରଦେଶରେ ଲୋକଙ୍କ ଗାଈ ପ୍ରତି ଅଧିକ ଅନାସ୍ଥା, ଉତ୍ତରାଞ୍ଚଳରେ ସେତେ ନୁହେ । ଥରେ ଜଣେ ଧନବାନ୍ ବ୍ୟକ୍ତି ଉତ୍ତରାଞ୍ଚଳରେ ତୀର୍ଥ ସ୍ଥାନ ଭ୍ରମଣ କରୁ କରୁ ଗୋଟିଏ ମଠରେ ପହଞ୍ଚିଲେ । ମଠର କୋଠାବାଡ଼ି ଦେଖି ତୃପ୍ତ ହେଲେ, ପରେ ଦେଖିଲେ ଗୋଟିଏ ମାତ୍ର ଗାଈ । ଗାଈଟି ସୁନ୍ଦର ନିର୍ମଳ ଘରେ ବନ୍ଧା ଥିଲା, ଗୁହାଳ ସର୍ବଦା ନିର୍ମଳ ରହୁଥିବାରୁ ମଶା ମାଛି ଉପଦ୍ରବର ଆଶଙ୍କା ନ ଥିଲା । ଗାଈ ସକାଶେ ଗୋଟାଏ ଶେଜ ପଡ଼ି ରହୁଥାଏ; ଥଣ୍ଡା ପବନ, ସାମାନ୍ୟ ମାଛି ମଶାକ ଉପଦ୍ରବ ନ ରହିବା ପାଇଁ ମୋଟା ତେରାଣିର ବ୍ୟବସ୍ଥା ହୋଇଥିଲା । ଦୁଇଜଣ ମନୁଷ୍ୟ ଗାଈକୁ ଗାଧୁଆପାଧୁଆ କରି ଖାଦ୍ୟପାନ ଦେବା ପାଇଁ ନିଯୁକ୍ତ ରହିଥିଲେ । ଏ ସବୁ ଧନୀକ ବ୍ୟକ୍ତିଙ୍କୁ ନୂଆଁ ବୋଧ ହେଲା । ଇତି ମଧ୍ୟରେ ମହାନ୍ତ ଶୁଣିଲେ—ଦକ୍ଷିଣ ଅଞ୍ଚଳର ଜଣେ ଧନୀକ ବ୍ୟକ୍ତି ମଠରେ ପହଞ୍ଚିଛନ୍ତି । ସେ ତାଙ୍କୁ ଅଗ୍ରହରେ ଡାକିଲେ, ସୁନ୍ଦର ଆସନ ଦେଲେ, ଦୁଃଖସୁଖ ନାନା କଥା ପଚାରି ବସିଲେ; ଶେଷରେ ଗାଈ କଥା ପଡ଼ିଲା । ମହାନ୍ତ କହିଲେ—ଗାଈଟିଏ ପୋଷିବା ବଡ଼ କଷ୍ଟ । ମୁଁ ଗୋଟିଏ ଗାଈ ରଖିଛି, ପାରୁ ନାହିଁ । ଆପଣଙ୍କର ଗାଈ କେତୋଟି ଅଛନ୍ତି ? ସେ ଉତ୍ତର ଦେଲେ, ମୋର ପଞ୍ଚାଶତ ପର୍ଯ୍ୟନ୍ତ ଗାଈ ଅଛନ୍ତି, ସେମାନେ ବଣ ପର୍ବତ ବୁଲି ବୁଲି ଚରନ୍ତି, ରାତିରେ ପଦାରମାଳରେ ରହିବା ସେମାନଙ୍କ ଅଭ୍ୟାସ । ସେମାନଙ୍କ ଖାଦ୍ୟ ପ୍ରଭୃତି ପାଇଁ ଆମକୁ ଧନ ହେବାକୁ ପଡ଼େ ନାହିଁ । ମହାନ୍ତ ମହାରାଜ ତାହା ଶୁଣି ଅବାକ୍ ହେଲେ, ଭାବିଲେ—ଏତେ ଗୌରବରେ ଯାହାଙ୍କୁ ସେ ସମୀପରେ ଆସନ ଦେଇଛନ୍ତି, ସେ ସେଥିର ଆଦୌ ଯୋଗ୍ୟ ନୁହନ୍ତି । ପ୍ରତ୍ୟହ ଏତେ ଜନ୍ତୁଙ୍କୁ ଯେ ଅବଦ୍ଧ ରଖି କଷ୍ଟ ଦେଉଛି, ତାଠାରୁ ବଳି ଗୋଟାଏ ପାପିଷ୍ଠ କ'ଣ ଜଗତରେ ଥାଇପାରେ ! ତାର ମୁହଁ ଚାହିଁବା ବଡ଼ ଦୋଷ । ଏଇ କଥା ବିଚାର କରି ସେ ତତ୍-

ଘଣାର୍ ଦୁଇ ଜଣ ତପସ୍ୱୀଙ୍କ ଦ୍ୱାରା ସେହି ପାପିଷ୍ଠ ଧନୀକ ବ୍ୟକ୍ତିଙ୍କୁ ମଠ ମଧ୍ୟରୁ ଅନ୍ତର କରି ଦେଲେ ।

ଗାଈ ରଖିବା ମନ୍ଦ ନୁହେ । ସେମାନଙ୍କ ସକାଶେ ଖାଦ୍ୟ, ଗୁହାଳର ସୁନ୍ଦର ଅଯୋଜନ କରିବା ଉଚିତ । 'Cows have milk in their mouth'—ଗାଈର କ୍ଷୀର ମୁହଁରେ, ଅର୍ଥାତ୍ ଭଲ ଖାଦ୍ୟ ପାଇବା ଗାଈ ବେଶୀ କ୍ଷୀର ଦିଏ । ସ୍ୱିଜରଲ୍ୟାଣ୍ଡରେ ଗୋଟିଏ ଗୋଟିଏ ଗାଈ ୬୪ ସେର ପର୍ଯ୍ୟନ୍ତ କ୍ଷୀର ଦିଅନ୍ତି । ତାହା କିଏ କେବଳ ପୁଷ୍ଟିଖାଦ୍ୟ ଯୋଗୁଁ । ଆମ ଦେଶରେ ୧୦୦ ଗାଈ ସେତିକ କ୍ଷୀର ଦିଅନ୍ତି ନାହିଁ । ବିଶେଷତଃ ଖାଦ୍ୟ ଅଭାବରୁ ଆମ ଦେଶର ଗାଈ ରସହୀନ, ଦୁର୍ବଳ ହୋଇଥାନ୍ତି । ଗାଈର ଖାଦ୍ୟ ପ୍ରତି ଆମ ପଶୁରକ୍ଷକମାନଙ୍କର ଯେତିକି ପରି ଦୃଷ୍ଟି ନ ଥାଏ, ଗୁହାଳ ପ୍ରତି ମଧ୍ୟ ସେହି ଭଳି । ଗୁହାଳର ଗଠନ ପ୍ରଣାଳୀ ଯାହାହେଉ, ତାହା ସର୍ବଦା ପରିଷ୍କାର ରହିଥିବା ଉଚିତ । ତା ନ ହେଲେ ମଶକ ଉପଦ୍ରବ ପଶୁ, ମନୁଷ୍ୟ ସମସ୍ତଙ୍କୁ ରହିବ । ତାହା ମନୁଷ୍ୟ ଆବାସ ସ୍ଥାନର କିଞ୍ଚିତ ଦୂରରେ ରହିବା ବାଞ୍ଛନୀୟ ।

ବଳଦ—ବଳଦ କୃଷକର ପ୍ରଧାନ ସମ୍ବଳ । ସେ କୃଷକ ବଳଦ୍ ଯୋଗେ କହିଲେ ଚଳେ । ତାହା ଯୋଗୁଁ କୃଷକ ଯାହା ବାର୍ଷିକ ପାଏ, ତହିଁରୁ ଅନ୍ତତଃ ଏକ ଷଷ୍ଠାଂଶ ତାହାର ଖାଦ୍ୟରେ ସେ ବ୍ୟୟ କରିଦେଉଥିବା ଉଚିତ । ଆଜିକାଲି ଗୋଚର ଭୂମି ବୋଲି ଆଉ ରହି ନାହିଁ; ଆମ୍ବ, ପନସ ତୋଠା ଯାହା କିଛି ସ୍ଥାନେ ସ୍ଥାନେ ଅଛି, ସେଥି ଭିତରେ ଗାଈ ବଳଦ ଚରିବୁଲି ଆସନ୍ତି । ତାହା ଯଥେଷ୍ଟ ନୁହେ ।

ବଳଦଙ୍କୁ କୃଷକ ସର୍ବଦା କାର୍ଯ୍ୟରେ ନିଯୁକ୍ତ ରଖେ । ମାସରେ ଦଶଦିନ ଜନ୍ତୁଙ୍କୁ ବିଶ୍ରାମ ଦେଉଥିବା ବିଧି । ଖୁବ୍ ଖଟିଯାଏ ବଳଦଙ୍କୁ କଷ୍ଟ ନ ଦେଇ ଦଶଟା ମଧ୍ୟରେ ବିଦାୟ ଦେବା ଉଚିତ । ଏତେ ଉପ-

କାର କରବା ବଳଦର ବୟସ ଖସିଲେ ଲୋକେ ୫, ୬ ଟଙ୍କାରୁ ବିକନ୍ତି, ତାହା ସେଇକ୍ଷଣି ହାଣ ମୁହଁରେ ପଡ଼େ । ୫, ୬ ଟଙ୍କା ଆଶାରେ କୃଷକ ବୁଢ଼ା ଗୋରୁଗାଈଙ୍କୁ ବିକ୍ରି କରିବା ଅନୁଚିତ । ଆଜକାଲି ସ୍ଥାନେ ସ୍ଥାନେ ଗୋଶାଳାମାନ ସ୍ଥାପନ ହେଲଣି । ସେଥିରେ ବୁଢ଼ା ଜନ୍ତୁଙ୍କୁ ଛାଡ଼ ଦେଉଥିବା ସର୍ବଦା ବାଞ୍ଛନୀୟ ।

ପଶୁ ଚିକିତ୍ସା—ରୋଗ କାହାକୁ ଛାଡ଼ ନାହିଁ; ଗାଈ ଗୋରୁମାନେ ମଧ୍ୟ ନାନା ରୋଗରେ ପୀଡ଼ିତ ହୁଅନ୍ତି । ଜନ୍ତୁଙ୍କ ଚିକିତ୍ସା ପାଇଁ ଆଜି ପର୍ଯ୍ୟନ୍ତ ସର୍କାର ବନ୍ଦୋବସ୍ତ ନ ଥିଲା । ଏଣିକି ପ୍ରତି ସହରରେ ମାତ୍ର ଗୋ ଚିକିତ୍ସାର ସୁବନ୍ଦୋବସ୍ତ ହେଲାଣି । ଏଥିପୂର୍ବରେ ଲୋକେ କ'ଣ କରୁଥିଲେ ? ଏ ପ୍ରଶ୍ନ ସ୍ୱତଃ ଉଠିପାରେ ? ଏଥି ପୂର୍ବରେ ଲୋକେ ଚେର ମୂଳ ଉପାୟରେ କେବଳ ପଶୁମାନଙ୍କୁ ନାନା ବ୍ୟାଧିରୁ ରକ୍ଷା କରୁଥିଲେ । ସେହିଲି ଜାଣିବା ଲୋକେ ଆଉ ନାହାନ୍ତି । ସେମାନେ ଜାଣିବା ବିଦ୍ୟା କାହାକୁ ନ କହି ଘୋର ଗୁପ୍ତ କରିଥିବାରୁ, ତାହା କାଳ କ୍ରମେ ଲୋପ ପାଇଛି । ବର୍ତ୍ତମାନ ଯେଉଁମାନେ ଅଳ୍ପାଅଳ୍ପି ଜାଣନ୍ତି ରୋଗ ଚିହ୍ନନ୍ତି ନାହିଁ । ହେବା ଔଷଧ ସେଇ ହେତୁ ଚେତେ କାମ କରେ ନାହିଁ । ଫାଟୁଆ, ବସନ୍ତ, ସର୍ଙ୍ଗିଫୁଲା, ଜଭ ଫୁଲା ପ୍ରଭୃତି ରୋଗରେ ପ୍ରତି ବର୍ଷ ବହୁତ ପଶୁ ମରୁଛନ୍ତି । କୃଷକମାନେ ନିଜ ନିଜର ମୂଲ୍ୟବାନ୍ ଜନ୍ତୁ ଗୁଡ଼ିକର ଜୀବନ ମୂର୍ଖ ଚିକିତ୍ସକଙ୍କ ହସ୍ତରେ ନଷ୍ଟ ନ କରି ନିକଟବର୍ତ୍ତୀ ପଶୁ ଚିକିତ୍ସାଳୟର ଆଶ୍ରୟ ନେବା ଉଚିତ ।

କୃଷକମାନେ ଅନେକ ସମୟରେ ନାନାବିଧ କଦର୍ଯ୍ୟ ଉପାୟର ପ୍ରଶ୍ରୟ ଦିଅନ୍ତି । ଚେଣ୍ଡା, ଦାମୁଡ଼ାଙ୍କୁ ପାଣିଙ୍କ ହାତରେ ଧରାଧରି କରି ସେମାନଙ୍କୁ ବହୁତ କଷ୍ଟ ଦେଇଥାନ୍ତି । ସାମାନ୍ୟ ରୋଗଗ୍ରସ୍ତ ହେବା ଦେଖା ଗଲେ ଲୁହା, ପୋଡ଼ି ସେମାନଙ୍କୁ ଜଳିବଳ କରନ୍ତି । ଏଭଳି ଉପାୟରେ

ଅନେକ ପଶୁଙ୍କ ଅକାଳ ମୃତ୍ୟୁ ଘଟୁଥାଏ, ଧନ ଖର୍ଚ୍ଚ ହୋଇଥାଏ, ଶେଷରେ ଭଲ ଉଦ୍ଦେଶ୍ୟରେ କରୁ କରୁ ମନ୍ଦ ହେଉଥିବା ଯୋଗୁଁ କୃଷକ ବଳେ ବଳେ ଦାରିଦ୍ର୍ୟଜାଲରେ ପିଞ୍ଜି ହୋଇ ପଡ଼ୁଥାଏ ।

## କେତୋଟି ଉପାୟ

କୃଷକମାନେ ନିମ୍ନ ଲିଖିତ କେତୋଟି ଉପାୟ ପାଳି ଚଳିଲେ ପଶୁକୁଳର କଲ୍ୟାଣକର ହେବ, କୃଷକ କୁଳର ଦାରିଦ୍ର୍ୟ ଦୂର ହେବ—

୧ । ପ୍ରତି ଗାଁରେ ଗାଈ ସଂଖ୍ୟା ଅନୁପାତରେ କେତୋଟି ଷଣ୍ଢ ପୋଷିବା ଉଚିତ । ଷଣ୍ଢ ସକାଶେ ଖାଦ୍ୟ, ଗୃହାଦିର ଅୟୋଜନ କରି ଦେବାକୁ ହେବ ।

୨ । କୁଆଁର ଗାଈଙ୍କପାଇଁ ଖୋଲା ଜାଗାରେ ଅଣ୍ଟିବା ଭଳି ଘର ବନ୍ଧାଯିବ, ଖାଦ୍ୟର ଯୋଗାଡ଼ କରାଯିବ । ତା ନ ହେଲେ କୁଆଁର-ପ୍ରଥା ଉଠାଇ ଦେବା ଉଚିତ ।

୩ । ଗାଁ ସମ୍ପର୍କରେ ଥିବା ଗୋଚର ଭୂମି କୌଣସି ରଯୃତ ପଟ୍ଟାକୁ ଛାଡ଼ିବା ବଡ଼ ଅଧର୍ମ ।

୪ । ଗାଈ, ଗୋରୁ, ପୋଡ଼ଙ୍କ ଯୋଗୁଁ ଉପାର୍ଜିତ ଧନର ଏକଅଂଶ ସେମାନଙ୍କ ଖାଦ୍ୟରେ ବିନିଯୋଗ କରାଯାଉଥିବା ବିଧି ।

୫ । ଗୋଟିଏ ହଳ ସକାଶେ ଦଶ ନଉତି ଭୂମିରେ ଘାସ ଉଠିଆ କରାଯାଉ । ଘାସମଞ୍ଜି କୋଇମ୍ବତୁର, ପାଲୁର ପ୍ରଭୃତି କୃଷି ଅଫିସମାନଙ୍କରେ ମିଳେ ।

୬ । ବଳଦ, ଗାଈ ବୁଢ଼ାବୁଢ଼ୀ ହେଲେ ସେମାନଙ୍କୁ ୫ । ୩ ଟଙ୍କା ଲୋଭରେ ବିକ୍ରି କରିବା ଯାହା, ହାଣ ମୁହଁରେ ଦେବା ବି ତାହା । ତାହା ନ କରି ପୋଷି ରଖିବା, ବା ନିକଟସ୍ଥ ଗୋଶାଳାରେ ଛାଡ଼ି ରଖିବା ପରମ ଧର୍ମ ।

୭ । ସ୍ୱେଚ୍ଛାସେବକ ଦଳ ସର୍ବସାଧାରଣଙ୍କ ଠାରୁ ଚାନ୍ଦା ସଂଗ୍ରହ କରି ସ୍ଥାନେ ସ୍ଥାନେ ଗୋଶାଳା ସ୍ଥାପନ କରିବା ଉଚିତ । ଗାଁ ଜାତି, ଜାଗିଆଣ ସଭା ଜରିମାନା, ଗାଁ ଭାଗବତ ପାଣ୍ଠି, ଦେବୋତ୍ତର ଚାନ୍ଦା ପ୍ରଭୃତିରୁ ସାମାନ୍ୟ ଅଂଶ ଗୋଶାଳା ନିର୍ମାଣରେ ବ୍ୟୟ କରାଯାଉଥିବା ବିଧି ।

୮ । ନିକଟବର୍ତ୍ତୀ ପଶୁ ଚିକିତ୍ସାଳୟରେ ରୋଗଗ୍ରସ୍ତ ଜନ୍ତୁଙ୍କ ଚିକିତ୍ସା କରାଯାଉ ଥିବା ସର୍ବଦା ନିରାପଦ ।



## କୃଷକର ଶିକ୍ଷା (୯)

କୃଷକଙ୍କ ମଧ୍ୟରୁ ଅଧିକାଂଶ ଅଶିକ୍ଷିତ । ଘୋର ଅଶିକ୍ଷିତ କୃଷକ ମଧ୍ୟ କୃଷିକାର୍ଯ୍ୟ ବେଶ୍ ଦକ୍ଷତାର ସହ ଚଳାଉ ଥାଏ । ତାହା ବୋଲି କୃଷିକାର୍ଯ୍ୟ ଯେ ଆଦୌ ଶିକ୍ଷା ସାପେକ୍ଷ ନୁହେଁ, ତାହା କହିବା ନିର୍ବୋଧତା ମାତ୍ର । ବହୁ ଦିନରୁ ଭାରତ କୃଷିପ୍ରଧାନଦେଶ ହେଲେ ମଧ୍ୟ କୃଷି ଦିଗରେ ଆମେରିକା, ଜାପାନ, ଜରମାନି ପ୍ରଭୃତି ଦେଶମାନ ଯାହା କରି ପାରିଛନ୍ତି, ତାହା ଭାବି ବସିଲେ ଭାରତର ଆପନ ବହୁତ ପଛରେ । ସତ୍ୟବାନ ପୁରୁଷ ତଳେ କୃଷି ଢଙ୍ଗ ଆମମାନଙ୍କର ଯାହା ଥିଲା, ଆଜି ପ୍ରାୟଶଃ ସେୟା କହିଲେ ଚଳେ । ଉନ୍ନତ ଧରଣର ଉପକରଣ ନାହିଁ, ବିହନରେ କୌଣସି ସୁପରିବର୍ତ୍ତନ ନାହିଁ, ଅନ୍ଧ ବିଶ୍ୱାସରେ ଅବିଶ୍ୱାସ ନାହିଁ, ପଶୁପାଳନରେ ଆଗ୍ରହ ନାହିଁ, କୃଷକଙ୍କ ମଧ୍ୟରେ ସହଯୋଗିତା ନାହିଁ, ପାରିବାରିକ ଅବସ୍ଥାରେ ଲେଶମାତ୍ର ସ୍ୱଚ୍ଛଳତା ନାହିଁ । ଭାରତ କୃଷିପ୍ରଧାନଦେଶ ବୋଲି ବୃଥା ଆସ୍ଫାଳନ କରି ବସିବା ଦ୍ୱାରା ଗୌରବ ଆସେ ନାହିଁ । ତାହାର ଠିକ ରକ୍ଷା କରିବା ପାଇଁ ଲୋଡ଼ା ହୁଏ ଶିକ୍ଷା; ଉନ୍ନତିଶୀଳ ଦେଶ ସହିତ

ପ୍ରତିଯୋଗିତା କ୍ଷେତ୍ରରେ ଉଣିଶିବିଶି ହୋଇ ଠିଆ ହେବାକୁ ହେଲେ ଲୋଡ଼ା ଶିକ୍ଷା; ଉନ୍ନତ ଧରଣର ଉପକରଣ, ବୀଜ, ଖାର ପ୍ରୟୋଗର ରୀତି ଜାଣିବା ପାଇଁ ମଧ୍ୟ ଲୋଡ଼ା ଶିକ୍ଷା । ପୂର୍ବକାଳରେ କୃଷିକାର୍ଯ୍ୟ ଯେଉଁ ଧରଣରେ ହେଉଥିଲା, ଅବିକଳ ସେହି ଢଙ୍ଗରେ କରିବାକୁ ହେଲେ, ପୂର୍ବକାଳରେ କୃଷକମାନେ ଯେଉଁ ପରିମାଣରେ ଦରିଦ୍ର ଥିଲେ, ବର୍ତ୍ତମାନ ସେହି ଭଳି ଦରିଦ୍ର ରହିବାକୁ ଇଚ୍ଛା ଥିଲେ ଶିକ୍ଷାର ଆବଶ୍ୟକତା ନାହିଁ । ମନୁଷ୍ୟ ସକଳ ପ୍ରକାର ଦୌର୍ଭାଗ୍ୟ କଷ୍ଟ ସମସ୍ତ ସମ୍ଭାଳ ପାରେ, କିନ୍ତୁ ଦାରିଦ୍ର୍ୟର ଅସହନୀୟ କଷ୍ଟର ପ୍ରହାର କ୍ଷଣେ ସୁଦ୍ଧା ସମ୍ଭାଳ ପାରେ ନାହିଁ । ସକଳ ଦିଗରେ ଏତେବେଳେ ଯେଉଁପରି ପ୍ରତିଯୋଗିତା ଚାଲିଛି, ଶିକ୍ଷା ବ୍ୟତୀତ ଅନ୍ୟ ଦେଶ ସହିତ ପ୍ରତିଯୋଗିତା କ୍ଷେତ୍ରରେ ଠିଆହୋଇ ହେବ ନାହିଁ । ସେମାନଙ୍କ ସହିତ ଉଣିଶିବିଶି ହୋଇ ମଧ୍ୟ ଧନୁର୍ଧର ଠିଆ ନ ହେଲେ ଆମ କୃଷକଙ୍କ ଦାରିଦ୍ର୍ୟ ମୋଚନର ଆଶା ସୁଦୂର ପରାହତ । ଅତଏବ ଆମ କୃଷକଙ୍କ ଏତେବେଳେ ପ୍ରଧାନ ସମ୍ବଳ କେବଳ ଶିକ୍ଷା ।

କୃଷକ ଦରିଦ୍ର—ତାହା କହା ସରିଛି । କୃଷକ ବାଳକର ଗୃହ୍ନିବା ପାଇଁ କର୍ତ୍ତବ୍ୟ ହେଲେ, ସେ ଲଙ୍ଗଳ କଣ୍ଡିରେ ହାତ ଦେବାକୁ ହେବ, ଗୋରୁ ଲାଞ୍ଜ ପଛେ ପଛେ ଯିବାକୁ ହେବ । ତାହା ନ ହେଲେ କୃଷକ ବିଚରାର ସଂସାର ଚଳେ ନାହିଁ । ତେବେ ସେ ପିଲାକୁ ଶିକ୍ଷା ଦେବ କିପରି ? ଆମେ କହୁଁ କୃଷକ ବାଳକର ଶିକ୍ଷା ପାଇଁ ନୈଶ ବିଦ୍ୟାଳୟ, ମଧ୍ୟାହ୍ନ ପାଠଶାଳା ପ୍ରଶସ୍ତ । ଆଉ ଗୋଟିଏ କଥା—ଜାତିଆଣ ସଭାର ଧୂମ ଭାରତର ଅନେକ ସ୍ଥାନରେ । ପ୍ରତି ଜାତିଆଣ ସଭାର ଗୋଟିଏ ଗୋଟିଏ ପାଣ୍ଠି ଅଛି । ଉକ୍ତ ପାଣ୍ଠିରୁ ଏକ ବିଶିଷ୍ଟାଂଶ କୃଷକ ବାଳକମାନଙ୍କ ଶିକ୍ଷାରେ ବରାବର ବିନିଯୋଗ ହେଉଥିବା ସ୍ପୃହଣୀୟ । ତାହା ହେଲେ ସେମାନେ ହଳ ସ୍କୁଲରେ ମଧ୍ୟ ବାର ବର୍ଷ ଯାଏ, ଶିକ୍ଷା ପାଇ ପାରିବେ ।

ଅବସ୍ଥାପନ୍ନ ବ୍ୟକ୍ତିଙ୍କଠାରୁ ଚାନ୍ଦା ସଂଗ୍ରହ କରି କୃଷକ ବାଳକମାନଙ୍କ ଶିକ୍ଷା ପାଇଁ ପାଣ୍ଠିଟିଏ ଗଢ଼ିବା ମଧ୍ୟ ଉଚିତ ।

## ଶିକ୍ଷା ନିର୍ଦ୍ଦେଶ

କୃଷକବାଳକ କେଉଁ ଧରଣରେ ଶିକ୍ଷା ପାଇବା ଉଚିତ, ତାହା ତଳେ କହାଗଲା:—

କୃଷି ସହିତ ଯେଉଁ ଯେଉଁ ବିଦ୍ୟାର ଘନିଷ୍ଠ ସମ୍ପର୍କ, କୃଷକ ବାଳକ ସେହି ସେହି ବିଦ୍ୟାର ପରିଚୟ ପାଇବା ଉଚିତ । ରସାୟନ ବିଦ୍ୟା ଖାଦ୍ୟ, ସାର, ମୃତ୍ତିକାର ଗୁଣାଗୁଣ ଦେଖାଏ; ପଦାର୍ଥବିଦ୍ୟା ମାଟି, ଗଛ, ପତ୍ର, ଗୃହ ଉପରେ ଆଲୋକ, ଉତ୍ତାପ ପ୍ରଭୃତିର କାର୍ଯ୍ୟ ବୁଝାଏ; ଉଦ୍ଭିଦବିଦ୍ୟା ଶସ୍ୟାଦି ବଢ଼ିବା କଥା, ପୋକଝଡ଼ା, ରୋଗ ନିବାରଣ ଉପରେ ନାନା ଶିକ୍ଷା ଦିଏ; ପ୍ରାଣୀତତ୍ତ୍ୱ ଗୋ ପାଳନ ପ୍ରସଙ୍ଗମାନ କହେ; ଜଳବାୟୁ ବିଦ୍ୟା ଏକ ସ୍ଥାନର ଶସ୍ୟ ଅନ୍ୟ ସ୍ଥାନରେ ଜଳବାୟୁର ପ୍ରଭେଦରୁ କପରି ଭିନ୍ନ ହୁଏ, ତାହାର କାରଣ ସ୍ଥିର କରେ; ଭୂତତ୍ତ୍ୱ କେଉଁ ମୃତ୍ତିକାରେ କେଉଁ ଶସ୍ୟ ହୁଏ, ମୃତ୍ତିକାର ଆକାର ସ୍ୱଭାବ ପ୍ରଭୃତି ବିଷୟରେ ଜ୍ଞାନ ଜନ୍ମାଏ । ଯନ୍ତ୍ର ବିଦ୍ୟା ଉନ୍ନତ ଯୁଗର କର୍ଷଣଯନ୍ତ୍ର ଗୁଡ଼ିକର ଗଠନ ପ୍ରଣାଳୀ ବ୍ୟବହାର ସମ୍ପର୍କରେ ଶିକ୍ଷା ଦିଏ । ଅତଏବ ଉପରୋକ୍ତ ପ୍ରତ୍ୟେକ ପ୍ରସଙ୍ଗ ଉପରେ କୃଷକ ବାଳକ ସାଧାରଣ ଭାବରେ ହେଉ ମଧ୍ୟ ଶିକ୍ଷା ପାଇବା ଉଚିତ । ଏହି ସକଳ ପ୍ରକାର ଶିକ୍ଷା କେବଳ ସ୍କୁଲରେ ବସି ଦେଲେ ଚଳିବ ନାହିଁ, କୃଷକବାଳକଙ୍କୁ ବେଳେ ବେଳେ କୃଷିକ୍ଷେତ୍ରକୁ ନେଇ ଅବଶ୍ୟକୀୟ ତତ୍ତ୍ୱ ବୁଝାଇବାକୁ ହେବ । ନୈଶ ବିଦ୍ୟାଳୟ, ମଧ୍ୟାହ୍ନ ସ୍କୁଲରେ ଏଭଳି ଶିକ୍ଷାର ସୁବିଧା ନ ହେଲେ ମଧ୍ୟ, ସେହି ସ୍କୁଲମାନଙ୍କରେ ଛାତ୍ରଙ୍କୁ ଅକ୍ଷର ପରିଚୟ, ସାଧ୍ୟାନୁଯାୟୀ ଉପରୋକ୍ତ କେତେକ ପ୍ରସଙ୍ଗ କହିବା ଉଚିତ ।

ଅବସ୍ଥାପନ୍ନ କୃଷକମାନେ ଉଚ୍ଚ କୃଷିଶିକ୍ଷାପାଇଁ ନିଜ ନିଜ ପିଲାଙ୍କୁ କୃଷି କଲେଜକୁ ପଠାଇବା ବିଧି । କୃଷକ ବାଳକମାନଙ୍କ ମଧ୍ୟରୁ ଅନ୍ତତଃ ହଜାରକେ ପାଞ୍ଚ ଜଣ ଉଚ୍ଚ କୃଷିଶିକ୍ଷା ପାଇ ପାରିଲେ ବହୁ କୃଷକଙ୍କ ବହୁତ ଉପକାର ହେବ । କୃଷି କଲେଜମାନଙ୍କରେ ଗରିବ କୃଷକଙ୍କ ଶିକ୍ଷା ପାଇଁ ସୁନ୍ଦର ବ୍ୟବସ୍ଥା ଅଛି । ସେମାନେ ଗୋବର ଖତ, ପୁଞ୍ଜା ଖତ, ନୂତନ ସାର ପ୍ରୟୋଗ, କର୍ଷଣଯନ୍ତ୍ର ବ୍ୟବହାର ପ୍ରଭୃତି ବିବିଧ ବିଷୟ ଅଳ୍ପ ସମୟ ମଧ୍ୟରେ ଶିକ୍ଷାକରି ପାରନ୍ତି । କୃଷିକ୍ଷେତ୍ରରେ କାର୍ଯ୍ୟ କରିବାଭଳି କଷ୍ଟ ସହିଷ୍ଣୁ ବ୍ୟକ୍ତିଙ୍କୁ ଏଥିପାଇଁ ବଛାଯାଇଥାଏ । ସେମାନେ କାର୍ଯ୍ୟ କରି ଦୈନିକ ମୂଲ ମଧ୍ୟ ପାଇଥାନ୍ତି । ଗରିବ କୃଷକମାନଙ୍କୁ ସେଇ କାରଣରୁ ସେଠାରେ ଶିକ୍ଷା ପାଇବା ପାଇଁ ସୁବିଧା ହୁଏ ।

ଏତ ଗଲା କୃଷି ସମ୍ବନ୍ଧୀୟ ଶିକ୍ଷା; ଯେ କୌଣସି ଶିକ୍ଷା କୃଷକଙ୍କ ପକ୍ଷରେ କଦାପି ଅନୁପଯୋଗୀ ନୁହେଁ । ଶିକ୍ଷାର ଉଦ୍ଦେଶ୍ୟ ଜ୍ଞାନ ଉପାର୍ଜ୍ଜନ । ଜ୍ଞାନ ଉପାର୍ଜ୍ଜନ ନ କଲେ ଯେ କୌଣସି କାର୍ଯ୍ୟରେ ମନୁଷ୍ୟର ପ୍ରବୀଣତା ଆସେ ନାହିଁ । ଶିକ୍ଷାର ଉଦ୍ଦେଶ୍ୟ ଧନ ଉପାର୍ଜ୍ଜନ ବୋଲି ବହୁ ଲୋକଙ୍କ ଧାରଣା ଥିବାରୁ, ଧନବାନ୍ ଲୋକେ ଶିକ୍ଷା ପ୍ରତି ତେତେ ଦୃଷ୍ଟି ଦିଅନ୍ତି ନାହିଁ । କୃଷକ ମୁହଁରୁ ବାରମ୍ବାର ଶୁଣାଯାଏ—ଅରେ ବାବା ଆମେତ ପାଠ ପଢ଼ି ପଣ୍ଡିତ ହେବା, ଲଙ୍ଗଳ କାନ୍ଧରେ ହାତ ଦେବ କିଏ ? ବ୍ରାହ୍ମଣେ କହନ୍ତି—ଆମର କର୍ମ ଧର୍ମରେ ବେଶ୍ ରୋଜଗାର ହୁଏ; ପାଠ ପଢ଼ି ଜାତି ଭ୍ରଷ୍ଟ କରୁଛି କିଏ ? କେଉଟ, କମାର, କୁମ୍ଭାର ପ୍ରଭୃତି କହନ୍ତି—ଅରେ ପାଠ ପଢ଼ି କୁର୍ଚ୍ଚି କାଉଚରେ ବସିବା ଆମ ଲୋକଙ୍କୁ ସୁନ୍ଦର ନୁହେ । ଏଇଭଳି ଗୁଡ଼ାଏ ଭ୍ରାନ୍ତ ଧାରଣା ଆମମାନଙ୍କ ହୃଦୟରେ ବହୁ ଦିନରୁ ବସାବାନ୍ଧି ରହିଅଛି । ଶିକ୍ଷାପ୍ରାପ୍ତ ଯୁବକ ଗୃହରେ ଖଟିବ ବୋଲି ତ ଗୋଟାଏ ଧରାବନ୍ଧା ନିୟମ ନାହିଁ । ନିଜକୁ ଯୋଗ୍ୟ କରିବା

ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ଶିକ୍ଷା ବ୍ୟତୀତ ଯୋଗ୍ୟ ହେବା ପାଇଁ ଅନ୍ୟ-ମାର୍ଗ ନାହିଁ । ଯଥା ସମୟରେ ଶିକ୍ଷା ପାଇସାରି ନିଜର ବ୍ୟବସାୟ କେବଳ ଚଳାଇବା ଉଚିତ । ଅଶିକ୍ଷିତ ଲୋକ ଅପେକ୍ଷା ଶିକ୍ଷିତ ଲୋକ ଯେ କୌଣସି ବ୍ୟବସାୟ ଅଧିକ ବିଚକ୍ଷଣତା ସହ ଚଳାଇବା ସର୍ବଦା ସମ୍ଭବ । ଭାରତରେ ୧୦୦ ରୁ ୩ ଜଣ ବାଣିଜ୍ୟ, ୧୦୦ ରୁ ୧୫ ନାନାବିଧ ଶିଳ୍ପ, ୧୦୦ ରୁ ୬୩ କୃଷି କାର୍ଯ୍ୟ କରନ୍ତି । କୃଷକମାନେ ଭୂମିକର ବୋଲି ବାର୍ଷିକ ୩୦ କୋଟି ଟଙ୍କା ଦିଅନ୍ତି । ଏମାନଙ୍କ ଯୋଗୁଁ ରାଜକୋଷ ପୂର୍ଣ୍ଣ ହୁଏ, ବହୁ ଲୋକଙ୍କୁ ମୁଠାଏ ମୁଠାଏ ଅନ୍ନ ମିଳେ । ଭାରତରେ ୧୦୦ ରୁ ୬୩ ଯେତେବେଳେ କୃଷକ, ତେବେ ଏମାନଙ୍କୁ ଧରି କେବଳ ଭାରତ ସିନା ! ଯେତେ ଦିନ ଯାଏ ଏମାନେ ଅଶିକ୍ଷିତ, ଅନୁନ୍ନତ ଅଛନ୍ତି, ସେତେ ଦିନ ଯାଏଁ ଭାରତ ନାନା ଦିଗରେ ଅନୁନ୍ନତ ରହିଥିବ । ସବୁ ଦେଶରେ କୃଷକ ଅଛନ୍ତି । ସେମାନେ କିନ୍ତୁ ଶିକ୍ଷିତ, ଆମ ଦେଶର କୃଷକଙ୍କ ପରି ନୁହନ୍ତି । ସେମାନଙ୍କ ମଧ୍ୟରେ ଏକତା ଅଛି, ଆମ ଦେଶ କୃଷକଙ୍କ ପରି ଏତେ ଜାତିଗତ ପାର୍ଥକ୍ୟ, ଭେଦଭାବ ନାହିଁ । ସେମାନଙ୍କ ମଧ୍ୟରେ ପାରିବାରିକ ସୁଖ ସ୍ୱାଚ୍ଛନ୍ଦ୍ୟ ଅଛି, ଆମ କୃଷକଙ୍କ ଭଳି ପେଟ ଚିନ୍ତାରେ ସେମାନେ ଅଧୀର ଅସ୍ଥିର ହୁଅନ୍ତି ନାହିଁ । କେବଳ ଶିକ୍ଷା ପ୍ରଭାବରୁ ସେମାନଙ୍କ ମଧ୍ୟରେ ଏକତା, ସୁଖ, ସୌହାର୍ଦ୍ଦ ଏବଂ ଶାନ୍ତି ବିରାଜିତ । କେବଳ ସେଇ ଶିକ୍ଷା ଆମ କୃଷକଙ୍କୁ ଅମେଳ, ଅଶାନ୍ତି, ଅନାହାରରୁ ରକ୍ଷା କରିବା କଥା । ବାଧ୍ୟତାମୂଳକ ଶିକ୍ଷାର ପ୍ରସାର ନ ହେବା ପର୍ଯ୍ୟନ୍ତ କୃଷକ ତଥା ଭାରତର ଅବସ୍ଥାରେ କୌଣସି ପରିବର୍ତ୍ତନ ଅସମ୍ଭବ ।



# କୃଷି ପ୍ରବାଦ (୧୦)

"No art is equal to the art of cultivation"

କ୍ଷେତ୍ରନିର୍ମାଣ, ଚାଷ, ବୃଷ୍ଟିପାତ ପ୍ରଭୃତି ସମ୍ପର୍କରେ ଅନେକ ଗୁଡ଼ିଏ ସୁନ୍ଦର, ଶିକ୍ଷଣୀୟ ପ୍ରବାଦ ପ୍ରଚଳିତ ଅଛି । ପ୍ରବାଦ ଗୁଡ଼ିକ ପ୍ରତି ଅନେକଙ୍କର କୌତୁହଳ ଜନ୍ମିଥାଏ। କୃଷି ସମ୍ପର୍କରେ ହୃଦୟରେ ସାଧାରଣ ଧାରଣାଟାଏ ଜାଗ୍ରତ ହେବାଭଳି ଅନେକରୁ କେତୋଟି ମାତ୍ର ପ୍ରବାଦ ବାଛି ଏଠାରେ ପ୍ରଦତ୍ତ କଲୁଁ:—

— ଜମି—

୧ ଏକ ଅଙ୍ଗୁଳ ଭୂମି ଅନେକ ଅମୂଲ୍ୟ ଖଣି ସ୍ୱରୂପ ।

୨ ପୃଥ୍ୱୀଜାତ ପଦାର୍ଥ ସକଳ ପ୍ରକାର ଦାନ ଅପେକ୍ଷା ଶ୍ରେଷ୍ଠ ।

୩ ମାଣେ ଭଲଭୂମିକୁ କାହାଣେ ଅପାଳକ ଭୂମି ସରିନୁହେ ।

୪ ମା ଠାରେ ଓ ଭୂମିରେ ବଣାସଥିଲେ ଜୀବନରେ ପେଟଚିନ୍ତା ରହେ ନାହିଁ ।

୫ ପାଣିବାଭଳି କ୍ଷେତ, ସାଙ୍ଗବାଭଳି ସ୍ତ୍ରୀ ସତତ ବାଞ୍ଛନୀୟ ।

୬ ଘର ପାଖ ଜମି ଜମିରେ ଜମା ।

୭ ମୁହଁଦେଖା ସ୍ୱଭାବ ମା ଆଉ ଭୂମି ଉଭୟଠାରେ ଦେଖାଯାଏ ।

୮ ଗୁଡ଼ାଏ ଅସାର ଭୂମିରେ ଘାଣ୍ଟିହେବା ଅପେକ୍ଷା ଖଣ୍ଡିଏ ସାର ଭୂମିରେ ଲଟିବା ଭଲ ।

୯ ହେଲା କଲେ ଯାଏ ଚଉପଦ୍ରୁପା ଖନ୍ଦ ହେଲେ ନାଶଯାଏ ବାଧବା ।

୧୦ ଉତ୍ତମ ଭୂମି ଉତ୍ତମ ବୀଜ ଅପେକ୍ଷା ଉତ୍ତମ ।

ଚଷା

୧୧ ବାର ଠାଁ ହୋଇ କୃଷକ, ଏକ ସ୍ଥାନରେ ରହି ଭକ୍ଷକ ନାଶଯା'ନ୍ତି ।

୧୨ ଦରିଦ୍ର ଚଷାର ଗୃଷ ହଙ୍ଗା ହୁଏ ନାହିଁ ।

୧୩ ବୁଢ଼ା ଚଷା, ଠୋକା ବୈଦ୍ୟର ଅର୍ଜ୍ଜନ ପଖାଳକୁ ଅଣ୍ଟେନାଇଁ ।

୧୪ ଢ଼େପ ଚଷା, ମଦୁଆ—ଦୁହିଁଙ୍କ ଅବସ୍ଥା ଏକ ।

୧୫ ଖାଲଭୂମି ଚଷା ପାଲିଙ୍କି ଚଢ଼ାଳଙ୍କ ପର ।

୧୬ ଚଷାଙ୍କ ଉତରେ ଏକତା ବଳର ଅଢ଼ ହୁଡ଼ା ଭୁଲି ।

୧୭ କୃଷକ ଓ ମେଷ—ଉଭୟଙ୍କ ଗନ୍ତବ୍ୟ ମାର୍ଗ ଏକ ।

୧୮ ବ୍ରାହ୍ମଣ ଚାଷ ହଳ ଟୁଙ୍ଗ୍ ଟୁଙ୍ଗ୍ ଉପରେ ଘାସ,
ମହାନ୍ତି ଚାଷ ପିଣ୍ଡାରେ ବାସ,
ବଙ୍ଗାଳୀ ଚାଷ ହୁକା ଘୁଡ଼୍ ଘୁଡ଼୍ ଖୁଁ ଖୁଁ ଖାସ,
ନଇ ଅତଡ଼ାର ମଝିରେ ଚାଷ, ଅନୁଢ଼ା ପୁଅକୁ କରଇ ଆଶ ।

## ଚାଷ

୧୯ ଦୂର ସ୍ଥାନ ଚାଷ ଅପେକ୍ଷା ବିଦ୍ୟା ଚର୍ଚ୍ଚାପର ।

୨୦ ପୁଣ୍ୟ କର୍ମରେ ପାପକ୍ଷୟ ହୁଏ, କୃଷି କାର୍ଯ୍ୟରେ ଦୁର୍ଭିକ୍ଷ ଦୂର ହୁଏ ।

୨୧ ଅନଳ ପତଙ୍ଗ ଧ୍ୱଂସ କରେ, ଶସ୍ୟ ଦୁର୍ଭିକ୍ଷ ଦମନ କରିଥାଏ ।

୨୨ ଆଠଦୀ ଚାଷ ନ କରିବା ଅପେକ୍ଷା ଚାଷ କରି ଋଣଗ୍ରସ୍ତ ହେବା ଭଲ ।

୨୩ ପଞ୍ଝା ଗହଳ ଥିଲେ ଚାଷ କାମ ଭଲ ।

୨୪ ଧନ ନ ଥାଇ ଦେଶ ଭ୍ରମଣ କରିବା ଯାହା, ଜନ୍ତୁ ନ ଥାଇ ଚାଷ ଆରମ୍ଭ କରିବା ତାହା ।

୨୫ "ଫଗୁଣେ ଚାଷ ସୁନାକସ, ଚଇତେ ଚାଷ କୁନ୍ଦୁମ୍ ପୋଷ, ବୈଶାଖେ ଚାଷ ହାକମ ପୋଷ, ଜ୍ୟେଷ୍ଠେ ଚାଷ ମୂଲିଆ ପୋଷ, ଆଷାଢ଼େ ଚାଷ ବେଲହୁଁ ଖସ ।

୨୬ "ମାଘ ଫଗୁଣେ ଯେ ଚାଷ ଉପେଖେ,
ଦୁର୍ବୁଦ୍ଧି ଲୋକ ସଙ୍ଗେ ତାକୁ ଲେଖେ ।

ଅଳ ମାସେ ଯେବେ କରଇ ଚାଷ,
ନୁହଇ ଚାଷ ନ ମରଇ ଘାସ ।
× × × ×
ମାଘେ ଚଷିଲେ ସୁନା ସଙ୍ଗେ ମୂଲ,
ଫଗୁଣେ ଚାଷ ରୂପା ସଙ୍ଗେ ତୁଲ ।
ଚୈତ୍ରର ଚାଷ ତମ୍ବା ସମାନ,
ବୈଶାଖ ଚାଷ ଧାନ ସମ ଜାଣ ।
ଜ୍ୟେଷ୍ଠମାସ ଚାଷ ମାଟିରୁ ମାଟି,
ସାମାନ୍ୟ ଫଳ ମୁଁ କହୁଁ ଅଛି ଟି ।
ଅଷାଢ଼ ଚାଷ ଜାଦୁଅ ସମାନ,
ନୁହେ ସମସର ନ ଫଳେ ଧାନ ।
ଶ୍ରାବଣ ଚାଷ ନିଫଳଟି ଜାଣ,
କ ହେବ ଖଡ ପଣ୍ଡୁଆ ଲକ୍ଷଣ ।"

୨୭ ଜନେ ଭୂମିରେ ସନେ ଚାଷ କଲେ ସରସ ଅଦାୟ ମିଳେ ।
୨୮ ବୁଦ୍ଧି ଅନୁସାରେ ସୁଖ, ଚାଷ ଅନୁରୂପ ମାପ ।
୨୯ ଉତ୍ତମ ଚାଷ, ଉତ୍ତମ ବନ୍ଧୁରେ ଦୁଃଖ ନ ଥାଏ ।
୩୦ ଏକଥର କୋଡ଼ା ଖୋଷାକୁ ଦଶ ଓଡ଼ ଚାଷ ସର ନୁହେ ।
୩୧ ମା କ୍ଷୀର ପଶୁପକ୍ଷେ ଯାହା, ଉତ୍ତମ ଚାଷ ଶସ୍ୟାଦ ପକ୍ଷେ ତାହା ହୁଏ ।

## ବୃଷ୍ଟି

୩୨ ଜୀବନ ଯାଏ କେବେ, ବର୍ଷା ଅସେ କେବେ କେହୁ ଜାଣନ୍ତୁ ନାହିଁ ।
୩୩ ଗୁରୁସ୍ଥ ଥିଲେ ଦୁଃଖ ନାହିଁ, ବର୍ଷା ଥିଲେ ଦୁର୍ଭିକ୍ଷ ନାହିଁ ।
୩୪ ସକାଳ ବର୍ଷା ବର୍ଷା ନୁହେ, ସକାଳ କୁଣିଆ କୁଣିଆ ନୁହେ ।
୩୫ ରାତି ବରଷା ମା ପରସା ।

୩୬ ତୁଲ ବର୍ଷାରେ ଖନ୍ଦ ଭଲହୁଏ ।
୩୭ କାର୍ତ୍ତିକ ପରେ ବର୍ଷା ହୁଏ ନାହିଁ, କର୍ଣ୍ଣ ପରେ ସଂଗ୍ରାମ ନାହିଁ ।
୩୮ ମାଘ ବର୍ଷା ବିଧବା ସ୍ତ୍ରୀ ପରି ।
୩୯ ବୃହତ୍ ଚନ୍ଦ୍ର ମଣ୍ଡଳ ସତ୍ତ୍ୱର ବୃଷ୍ଟିର ସଙ୍କେତ, କ୍ଷୁଦ୍ର ବିଳମ୍ବର ସୂଚନା ଦିଏ ।
୪୦ ଘନ ଘନ ଘଡ଼ଘଡ଼ି ଅନାବୃଷ୍ଟିର ସଙ୍କେତ ।
୪୧ ଇନ୍ଦ୍ର ଧନୁ ପଶ୍ଚିମରେ ଦେଖାଗଲେ ବିଳମ୍ବରେ ବର୍ଷା ହୁଏ ।
୪୨ ସକାଳେ ଝିପି ଝିପି ବର୍ଷା, ମଧ୍ୟାହ୍ନେ ମେଘାଚ୍ଛନ୍ନ ସନ୍ଧ୍ୟାରେ ଆକାଶ ନିର୍ମଳ—ଅନାବୃଷ୍ଟିର ସଙ୍କେତ ।
୪୩ ମେଘ ଉତ୍ତର ଦିଗେ ଚଳିଲେ ବର୍ଷା ହୁଏ ନାହିଁ, ପଶ୍ଚିମ, ଦକ୍ଷିଣକୁ ଗଲେ ବଡ଼ ବର୍ଷା ହୁଏ ।
୪୪ ପର୍ବତରେ ମେଘ ଚଢ଼ିଲେ ବର୍ଷା ହୁଏ ।
୪୫ କୁକୁଡ଼ା ପକ୍ଷ ଟେକ୍ରାଇ ଦେଇ ବର୍ଷାର ସୂଚନା ଦିଏ ।
୪୬ ଖୋଲା ସ୍ଥାନରେ ବେଙ୍ଗ ରଡ଼ିଲେ ତିନିଘଣ୍ଟା ମଧ୍ୟରେ ବର୍ଷା ହୁଏ ।
୪୭ ମେଣ୍ଢାମାନେ ଦଳବଦ୍ଧ ହୋଇ ରହିଲେ ବର୍ଷା ହୁଏ ।
୪୮ ଧାନ କ୍ଷେତରେ ବୁଢ଼ି ଅଣ୍ଡିରା ବର୍ଷାର ସୂଚନା ।
୪୯ ଝଡ଼ ପୋକ ବାହାରିଲେ ଝଡ଼ ହୁଏ ।
୫୦ ପିମ୍ପୁଡ଼ିମାନେ ଗଛ ଚଢ଼ିଲେ ଭଲ ବର୍ଷା ହୁଏ, ଖନ୍ଦ ହୁଏ ।
୫୧ ପୂର୍ବେ ଅର୍ଗଳ ପଶ୍ଚିମେ ଧୋଇ, ନାଥ ବୋଲେ ପୁଣ କଷ୍ଟେ ବର୍ଷଇ ।
୫୨ ଆଠ ଦୁମୁକାଣି ଷୋଳ ଅସରା, ବତିଶଲଫି ୨ ଚଉଷଠି କୁଣ୍ଡା ଝରା ତେବେ ଯାଇ ଚଷାର ପେଟ ହୁଏ ପୁରା ।
୫୩ ପୂର୍ବ ମେଘ ପଶ୍ଚିମେ ଯାଇ, ବନ୍ଧ ଗାଡ଼ିଆ ଦୁବ ଉଠଇ ।
୫୪ ଶ୍ରାବଣ ମାସର ଅଦ୍ୟ ଚଉଠି, ଶୁକ୍ଳଦିଗେ ଯେବେ ମେଘ ନ ଉଠି,

ଆଦ୍ଦ୍ରକୁ ବାଉଦ୍ରୁ ନ ବହେ ବା, ନାଥ ବୋଲେ ପୁଣ ବଦେଶ ଯା ।
୫୫ ଶ୍ରାବଣ ଧୋଇ ବାଧଇ ନାହିଁ, ଭାଦ୍ରବ ଧୋଇ କଛୁ କଛୁ ରହି, ଆଶ୍ୱିନ ଧୋଇ ସର୍ବସ୍ୱ ଯାଇ ।

୫୬ ଯଦି ବରଷଇ ମାଘର ଶେଷ ଧନ୍ୟ ସେ ରାଜା ଧନ୍ୟ ସେ ଦେଶ ।
୫୭ ଦୋଲବାସି ବା ଜଳବାସି କ କରବୁ ଭାଇ ଖଡ଼ ଘସି ।

## ମୃତ୍ତିକା

୫୮ ଯେଉଁ ଭୂମିରେ କୁଶ କଅଁଳେ ନାହିଁ, ତାହା ନୀରସ ଭୂମିରେ ଯାଏ ।
୫୯ ବଞ୍ଜର ଅଲା ପଠାଣର ସ୍ନେହ ଭୁଲ୍ଲ ଅସ୍ଥାୟୀ ।
୬୦ ନାଲି ଭୂମି ଶସ୍ୟ ଦନକର ଅହାରକୁ ନଅଣ୍ଟ ହୁଏ ।
୬୧ ବ୍ରାହ୍ମଣ ଝିଅ ପାଇଁ ଦରାଣ୍ଡି ହେବାଭଳି ନୀରସ ଭୂମି ଖତ ପାଇଁ ଦରାଣ୍ଡି ହୁଏ ।
୬୨ ଖାର ଭୂମିରେ ବହନ ବୁଣିଲେ ଛତୁ ଉଠେ ।
୬୩ ଖାଲି ବନ୍ଧ ଯାହା, ଖାଉ ଭୂମି ତାହା ।
୬୪ କଙ୍କି ହଗିଲେ ବୁଲୁବୁଲୁ ଠେକବା ଭୂମି କ ଭୂମି ?
୬୫ ଗୋଜ ନଥିବା ଘା ଗୃଷ ବୃଥା ଯାଏ ।
୬୬ କୁଣ୍ଡୁଡ଼ା ତଳ ଭୂମି ଦଶଲସ୍ମୃତ ବର୍ଣ୍ଣ ଧରେ ।

## ବୁଣା, ରୁଅ

୬୭ ଗୁଣ ଦେଖି ପୁରସ୍କାର ଦଅ, ମାଟି ଗୁହିଁ ବହନ ବାଛ ।
୬୮ ନସତ ବହନ ମାରୁ ପଡ଼େ ।
୬୯ ବାର ପୂନଅଁ ବାହାରର କାମ ବୁଢ଼ାକାଳର ପିଲ୍ଲପଣ ।
୭୦ ଅଗୁଲ୍ମ ବୁଣା ଝୋକ ମାଇପ —ଭଲ ।
୭୧ ପାତଳ ବେଳ୍ନଷା ମାପଦଏ, ବହଳ ଖନ ସୁନ୍ଦର ଦଶେ ।

୭୨ ଜାମ୍ ଗଛରେ ଆମ୍ ଫଳେନାହିଁ, ବଦ୍ଧନ ଅନୁରୂପ ଗଛ ।

୭୩ ତୁଳସୀ ଦୁଇ ପତ୍ରରୁ ବାସେ । ଗଛର ବାଲ୍ୟତ ଅବସ୍ଥାରୁ ଭବିଷ୍ୟତ୍ ଅବସ୍ଥା ଧରାଯାଏ ।

୭୪ ରୋହିଣୀରେ ବୁଣିବା ଅପେକ୍ଷା ରାନ୍ଧାଧାଣ୍ଡି ବାଟରେ ବୁଣିବା ଭଲ ।

୭୫ ବୁଣାବୁଣି ଆରଦ୍ରାଠାରୁ ଶେଷ ହୁଏ ।

୭୬ ଆଗେ ବୁଣୁ ବା ପଛେ ବୁଣୁ ଗର୍ଭଣାକୁ ଝୁଣ୍ଟୁ ଝୁଣ୍ଟୁ ।

୭୭ ଛାଡ଼ିବୁ ତନ୍ଦ୍ରା ଧରିବୁ ଶ୍ରମ, କୋମଳ କରିବୁ ଶୁଷ୍କ କଠିନ, ବୁଣୁ ଖଟୁଡ଼ି ପକା ଖତ, ହୁଡ଼ା ଖଣ୍ଡିରେ ନ ଦେବୁ ହାତ, ଦୀର୍ଘ ହାତେ ପ୍ରସ୍ଥ ହାତେ, ହିଡ଼ ବାନ୍ଧିବୁ ଘାସ ସହିତେ, ଚଷା ଭାଇମାନେ ରେ, ଯତ୍ନ ପାଣି ଦହିଁ ଧାନ ରେ ।

୭୮ ଜନ୍ମକୁ ରୋଇଲେ କର୍ମକୁ ଫଳେ ।

୭୯ ଆଷାଢ଼େ ରୋଇଲେ ଦଲକେ, ଶ୍ରାବଣେ ରୋଇଲେ ଫଲକେ, ଭାଦ୍ରବେ ରୋଇଲେ ତୁଷକେ, ଆଶିନେ ରୋଇଲେ ବିଷକେ ।

୮୦ ମିଥୁନେ ଛତା, କକଡ଼ା ହତା, ସିଂହ ଉତ୍ତରା କନ୍ୟା ନିଘଞ୍ଚନ ରେ, ତୁଳ ମାସରେ ପାଣି ବରଷିଲେ ସବୁ ସମତୁଲ ହୋ ।

## ଧାନ

୮୧ ଧାନ ଆଖୁ ନିରସ ଭୂମିରେ କ'ଣ ହୁଏ ?

୮୨ ଘାସ ସଲବଲ ଧାନ କିଆରି ଦିଶେ ଶୂନ୍ୟ ଦେବାଳୟ ପରି ।

୮୩ ଧାନ କିଆରିକୁ ପାଣିନାଳ ସେନାଙ୍କ ସେନାପତି ତୁଲ୍ୟ ।

୮୪ ଗୋଟିଏ ଧାନ ଗଛ ଶଗଡ଼େ ପାଣି ଲୋଡ଼େ ।

୮୫ ଧାନ ନା ରଙ୍ଗିଆ ଷାଇ, ମୋତେ ନ ଛାଡ଼ ଚଷାଭାଇ, ହାତେ ଲମ୍ବ କାଢ଼ିବା କଂସା, ଦେଖି ମରୁଥିବେ ସାଇପଡ଼ିଶା ।

୮୬ ଉଷ୍ଣ ମୁଠି ଅଢ଼ଦମୁଠି, କଥାରୁ ମଞ୍ଜିରେ ପୋତିବ କାଠି, ଜଳରେ ରଖିବ ପାଣି ସମାନ, ପର୍ବତ ଶିଖରେ କରିବ ଧାନ, ଯେବେ ନୋହିବ ତହିଁରେ ଧାନ, ତେବେ କାଟିବ ଡ଼ାକର କାନ ।

## ଅନ୍ୟ ଶସ୍ୟ

୮୭ ମୂର୍ହିଁ ଗ୍ରେଗରେ ପଣ୍ଡ, ପୂର୍ବା ପବନରେ ମୁଗ ଯାଏ ।

୮୮ ପୂର୍ବା, ଉତ୍ତର ପବନ କପାକୁ ପାଗ ।

୮୯ ଆଖୁ ଖନ୍ଦ ଦାରିଦ୍ର୍ୟ ଦୂର କରେ ।

୯୦ ବୁଢ଼ା ରୁଅରେ ବାଇଶ ପାଗେ, ବାଳୁତରୁଅ ଧାନକୁ ସାଜେ ।

୯୧ ମଘର, ମେଷ ଚଢ଼ା ଯାଉଥିଲେ ଭଲ ।

୯୨ ଅରଦ୍ରାରେ ବର୍ଷାହେଲେ କପୂର୍ା ଭଲ ହୁଏ ।

୯୩ ନଡ଼ିଆ ଗଛ ଗୃଉଲଧୂଆ ପାଣିରେ ମରେ ।

୯୪ କୁହୁଡ଼ା ଆମ୍ବର ଶତ୍ରୁ ।

୯୫ ମାଘରକଣ୍ଠା ଫଗୁଣ ଫଣ୍ଟା ଚୈତ୍ରେ ଝାଙ୍କି ତେବେ ସେ ଦେଖିବ ମୁଗର ଖାନ୍ଧ ।

୯୬ ଜ୍ୟେଷ୍ଠେ କଦଳୀ ଅଷାଢ଼େ କଅ, ପୋତ ବା ନ ପୋତ ହୁଅଇ ଠିଆ ।

୯୭ ହାତେ ଗୃଖଣ୍ଡେ ଖୋଳିବ ଗାତ, ପତର ଖଣ୍ଡିକୁ ନ ଦେବ ହାତ, ଚଉକେ ଛଡ଼ି ଭାଙ୍ଗିବ ଭଣ୍ଡା, ତେବେ ସେ ଦେଖିବ କଦଳୀ ପେଣ୍ଡା ।

୯୮ କା, ବା, ଦା, ମା,—ପ୍ରତି ବୃଷ୍ଟି ଦେଲେ କଦଳୀ ଭଲ ଫଳେ ।

୯୯ କୁଦାଦଲା କଲେ କରେ ସିନା ଚଉଭୁଜ ବୋଲେ ବଢ଼ିବ ବୋଇତାଳୁ ବୋଲେ ଦୂର ଯା କୁଇଁ ଦେଲେ ମୁଁ ସଢ଼ିବ ।

## ପଶୁ

୧୦୦ ଶସ୍ୟ ବୃଦ୍ଧି ପଶୁବୃଦ୍ଧି ଉପରେ ନିର୍ଭର ।

୧୦୧ ଅଧିକ ଖରଚରେ ଲୁଗା ପଟା ଊଣା ଦାମରେ ଗୋରୁଗାଈ କିଣିବା ଅନୁଚିତ ।

୧୦୨ ବିବାହ ପୂର୍ବରୁ ସ୍ତ୍ରୀ ର ପିତାମାତା, ଭାଇଭଉଣୀଙ୍କ ପରିଚୟ ଲାଭ କର; କ୍ରୟ ପୂର୍ବରୁ ଗୋରୁଗାଈର ଗୁଣବର୍ଣ୍ଣ ବୁଝା ସୁଝା କର ।

୧୦୩ ଭଲ ଜନ୍ତୁକୁ ବଧେ, ବଡ଼ ଲୋକକୁ ପଦେ ।

୧୦୪ ନାକ ଦଉଡ଼ି ନ ଥିବା ବଳଦ ବିଧବା ପାଳିତ ବାଳକ ପରି ଅବାଧ ।

୧୦୫ ଜନ୍ତୁକୁ ଦଶବର୍ଷଠାରୁ ଅଧିକ ବାହିଁବା ଚଷା ଘୋର ପାପୀ ।

୧୦୬ ବଳଦକୁ ସୁସ୍ଥ ରଖେ ଖାଦ୍ୟ ।

୧୦୭ ଗାଈ ଖୀରରେ ୬୪ ପ୍ରକାର ଅମୃତ ଅଛି ।

୧୦୮ ଗାଈ ମୁହଁରେ ଖୀର ।

୧୦୯ ମୋଟା ମେଣ୍ଢା ଗୋଲାକୁ ଭଲ ।

୧୧୦ ବଳଦ କହେ:—

ସୂତା ଦଉଡ଼ିରେ ବାନ୍ଧରେ,
ଉଣ୍ଣାସ ଜୁଆଳି କାନ୍ଧରେ,
କୋଳଥ ଘାସ ଖାଇବାକୁ ଦେଇ
ଗାଁ ବଳେ ହଳ କର ରେ ।

୧୧୧ ଜାଣୁ ନ ଜାଣୁ ଝାମ୍ପୁଲି ଆଣ,
ଖାଡ଼ୁଆ ସିଙ୍ଗା ସବୁଠୁଁ ଟାଣ;
କୁଣ୍ଡଳି ସିଙ୍ଗା ଦେଖିବୁ ଯେବେ,
ଅଣ୍ଟାରୁ ପଇସା କାଢ଼ିବୁ ତେବେ;

ଅଣିଥିବୁ ମୂଳା ସିଙ୍ଗାକୁ ଚଷି,
କାନ୍ଦୁଥିବୁ ହାଡ଼ ମୁଣ୍ଡରେ ବସି,
ହିଙ୍ଗ ସରୁଆ ଲଙ୍କାର ମୋଟା,
ମାଗଣା ଦେଲେ ନ ଅଣି ଲେଉଟା ।



## ଅନ୍ୟାନ୍ୟ

୧୧୨ ହେଲେ ନାଶ ଯାଏ ଚେପ ଛୁପା ଖନ୍ଦ
ହେଲେ ନାଶ ଯାଏ ବିଧବା ।

୧୧୩ ବର୍ଷକର ଖନ୍ଦ ଦିନକର (କୁଣାକୁଣି) ବେଳାକୁ ଧରି ହୁଏ ।

୧୧୪ ସବଳ ବଳଦ ଚଷା ହୃଦୟରେ ବଳ ହଏ ।

୧୧୫ ଚାଷ ବ୍ୟବସାୟ ବାଉଳ ହାତର ଟେକା ପଥର ପରି ।

୧୧୬ ଚଷା ସଭିଙ୍କୁ ଖୁଆଏ ନିଜେ ଖାଇବାକୁ ପାଏ ନାହିଁ ।

୧୧୭ ଷାଠିଏ ଓଡ଼ ମୂଳା, ଚାରି ଅଧ ଗୁଳା
ଚାରି ଅଧ ଭୁଲା, ଚାରି ଅଧ ଧାନ
ତେବେ ସେ ଚଷା ଖାଇବ ବଙ୍ଗଳା ପାନ ।

୧୧୮ "ଗୃହସ୍ଥ ଯେବେ କୃଷି ପ୍ରତିଦିନ, ଦେଖୁଥାଏ ଫଳେ ସେହି ସୁବର୍ଣ୍ଣ ।
ଅନ୍ତଃପୁର ଚିନ୍ତା ଗୋଚରେ ଦେବ, ମାତାଙ୍କୁ ପାକଶାଳା ସମର୍ପିବ ।
ଗାଈ ବଳଦଙ୍କୁ ସମାନ ଜନେ, ସମର୍ପିବ ନେଇ ଅତି ଯତନେ ।
ଏକା କୃଷିକୁ ଆପେ ଦେଖୁଥିବ, ହେଳା କଲେ ଅନ୍ତେ ଭେଳା ବୁଡ଼ିବ ।
ଗାଈ ବଳଦ କୃଷି ଆଦି କରି, ବିଦ୍ୟା ବିଭବ ନବଯୁବା ସ୍ତ୍ରୀରି,
ରାଜା ଆଦି ଯେ ତୀକ୍ଷ୍ଣ ଶସ୍ତ୍ରମାନ, ନ ଦେଖେ ଯେବେ ହୋଇ ସାବଧାନ,
କ୍ରମେ କ୍ରମେ ସେ ସବୁ ନାଶ ଯା'ନ୍ତି, ଆପେ ବ୍ୟଥା ଲୋକେ ଦାଣ୍ଡେ ବାଛନ୍ତି ।
ସମର୍ଥ ଲୋକ ଯେବେ କରେ କୃଷି, ଆପେ ହୁଏ ସୁଖୀ ପରକୁ ପୋଷି ।

ସମର୍ଥ ହୋଇ ଯେ କୃଷି ଉପେଷେ, ଆତ୍ମ ସ୍ୱାର୍ଥ ପଣେ ତାହାକୁ ଲେଖେ ।
ଅସମର୍ଥ ଯେ କୃଷି କରେ ଜାଣ, ଶେଷରେ ଭିକ୍ଷା ମାଗି କାଟେ ଦିନ ।"

୧୧୯ ବଳଦ ପରମଳ ତେବେ ସେ ଜାଣିବ ଦୃରୁଦେଖି ଯେବେ ବସେ ।
ବିଲ ପରମଳ ତେବେ ସେ ଜାଣିବ ଗାଁ ପାଣି ଯେବେ ପଶେ ।
ପୁଅ ପରମଳ ତେବେ ସେ ଜାଣିବ ବୁଢ଼ା କାଳେ ଯେବେ ପୋଷେ ।
ଭାର୍ଯ୍ୟା ପରମଳ ତେବେ ସେ ଜାଣିବ ବୁଢ଼ା କାଳେ ଯେବେ ଘସେ ।



## ବିବିଧ ଫସଲ (୧୧)

"Better the gifts of the earth than the rewards of the powerful."

ବିଲ, ବାଡ଼ି ଏବଂ ଉଦ୍ୟାନ:—ଏହି ତିନି ସ୍ଥାନରେ ନାନା ଫସଲ ଲୋକେ କରନ୍ତି । ଯେଉଁ ଶସ୍ୟ ବିଲରେ ହୁଏ ତାହା ବାଡ଼ି ଓ ଉଦ୍ୟାନରେ କରିବା ଅସୁବିଧା । କୃଷକମାନଙ୍କ ବିଲ ଶସ୍ୟପ୍ରତି ଯେତେ ପରିମାଣରେ ଦୃଷ୍ଟି ରହିଥାଏ, ବାଡ଼ି ଓ ଉଦ୍ୟାନ ଗୃଷ ପ୍ରତି ସେତେ ଖାତିର ଥାଏ ନାହିଁ । ପ୍ରତି କୃଷକର ସାଧାରଣତଃ ବାଡ଼ି ବୋଲି ଖଣ୍ଡିଏ ଖଣ୍ଡିଏ ଥାଏ । ଅନ୍ତତଃ ଖଣ୍ଡିଏ ଖଣ୍ଡିଏ ରଖି ସେଥିରେ ନାନାବିଧ ଫସଲ ଉତ୍ପନ୍ନ କରୁଥିବା ନିତାନ୍ତ ଆବଶ୍ୟକ । ତାହା କୃଷକ ରମଣୀ ପାଇଁ ବର୍ଷକ ପାଇଁ କାଯ୍ୟ ଯୋଗାଏ, ପ୍ରତି ଦିନର କାର୍ଯ୍ୟ ମଧ୍ୟ ଚଳେ । ଆଜଯାଏ ଆମ ଅଞ୍ଚଳର କୃଷକମାନଙ୍କ ସେଥିପ୍ରତି ନଜର ନ ଥିବା ବାସ୍ତବିକ ଦୁଃଖର କଥା । ସ୍ଥାନେ ସ୍ଥାନେ ଉଦ୍ୟାନ ବୋଲି ଯାହା ଦେଖାଯାଏ, କେତେ-ଜଣ ଅବସ୍ଥାପନ୍ନ ବ୍ୟକ୍ତିଙ୍କ ଆମୋଦ ମଉଜ ପାଇଁ ମାତ୍ର, ଲାଭ ଆଶାରେ ନୁହେ, ଆବଶ୍ୟକତା ଦୃଷ୍ଟିରେ ନୁହେ । ବର୍ତ୍ତମାନ ବିଲ, ବାଡ଼ି, ଉଦ୍ୟାନ ଗୃଷ ପ୍ରସଙ୍ଗରେ ଅତି ସଂକ୍ଷେପରେ ମାତ୍ର ଆଲୋଚନା କରାଯିବ ।

**ଖାଦ୍ୟଶସ୍ୟ**

ଧାନ:—ଭାରତରେ ୧୦୦୦୦ ପ୍ରକାର ଧାନ ଅଛି ବୋଲି କେହି କେହି ସ୍ଥିର କରନ୍ତି । ଧାନ ସାଧାରଣତଃ ଜ୍ୟେଷ୍ଠରେ ବୁଣାଯାଏ, ତଳି ପକାଯାଏ; ଶ୍ରାବଣରେ ରୁଆ ବେଉଷଣ ହୁଏ, କାର୍ତ୍ତିକ ମାର୍ଗଶିରରେ କଟା ଯାଏ । ଧାନ ଖନ୍ଦ ପାଇଁ ସଫା ଚାଷ ଲୋଡ଼ା, ଭଲ ବତ୍ତନ ଲୋଡ଼ା, ସର୍ବଦା ପାଣି ଲୋଡ଼ା ।

ଗହମ:—ଶୀତ ପ୍ରଧାନ ଦେଶମାନଙ୍କରେ ଗହମ ଭଲ ହୁଏ । ସାଧାରଣତଃ ଭାରତର ଉତ୍ତର ପଶ୍ଚିମ ଅଞ୍ଚଳରେ ଗହମ ହୁଏ । କାର୍ତ୍ତିକରେ ତାହା ବୁଣାଯାଏ; ମାଘ ଫଗୁଣରେ କଟାଯାଏ । ଏଥିପାଇଁ ଜଳ ଆବଶ୍ୟକ ହୁଏ ନାହିଁ । ମାସକେ ଦୁଇ ଥର ଜଳ ସେଚନ କଲେ ଯଥେଷ୍ଟ । ପୋକଡ଼ା ଗହମରେ ଗଛ ହୁଏ ନାହିଁ । ଅଟେଇ ବା ଖଣିରେ ତାହା ରଖାଯାଇ ପାରେ ।

ମୁଗ:—ଧାନ କଟାଗଲେ ପାଣି ଛାଡ଼ିବା ଜମିରେ ମୁଗ ବୁଣାଯାଏ । ଏଥିପାଇଁ ଅଧିକ ଚାଷ ଆବଶ୍ୟକ ହୁଏ ନାହିଁ । ଚୈତ୍ରରେ ତାହା ଉପୁଡ଼ା ଯାଏ, ଅମଲ କରାଯାଏ ।

ମାଣ୍ଡିଆ—:ଉତ୍ତର ଦକ୍ଷିଣ ଏବଂ ପଶ୍ଚିମ ପାର୍ବତ୍ୟ ଅଞ୍ଚଳରେ ବିଶେଷ ପରିମାଣରେ ମାଣ୍ଡିଆ ହୁଏ । ସେଥିପାଇଁ ବେଶୀ ବର୍ଷା ଆବଶ୍ୟକ ହୁଏ ନାହିଁ । ତାହା ଜ୍ୟେଷ୍ଠ, ଆଷାଢ଼ରେ ବୁଣାଯାଏ; ଭାଦ୍ର, ଆଶ୍ୱିନରେ ଖୁଣ୍ଟା ଯାଏ । ଅନେକ ସ୍ଥାନରେ ମାଣ୍ଡିଆ ତଳି କରି ରୁଅନ୍ତି । ଏଥିପାଇଁ ଭଲ ଚାଷ ଲୋଡ଼ା ।

କୋଳଥ:—ଧୋବ, ରଙ୍ଗା, ମାଟିଆ, ତିନି ବର୍ଣ୍ଣର କୋଳଥ ଦେଖାଯାଏ । ତାହା ସାଧାରଣତଃ ନୀରସ ଭୂମିରେ ହୁଏ । ଏଥିପାଇଁ ବର୍ଷା ତେତେ ଆବଶ୍ୟକ ନାହିଁ, ଚାଷ ବେଶୀ ଲୋଡ଼ା ନାହିଁ । କୋଳଥ ଭାଦ୍ର, ଆଶ୍ୱିନରେ ବୁଣାଯାଏ; କାର୍ତ୍ତିକ, ମାର୍ଗଶିରରେ ଉପୁଡ଼ା ଯାଏ ।

କଞ୍ଚାଗଛ ଗୋରୁଙ୍କୁ ଖୁଆଇବା ପାଇଁ ବର୍ଷକେ ଏକ ଜମିରେ ତିନଥର ବୁଣା ଯାଇ ପାରେ ।

ବର—:ଏଥିପାଇଁ ସାର ଚାଷ ଆବଶ୍ୟକ ନାହିଁ । ଜରସ ଭୂମିରେ ହୋଇ ପାରେ । ଶ୍ରାବଣ, ଭାଦ୍ରବରେ ବୁଣାଯାଏ । କାର୍ତ୍ତିକ, ମାର୍ଗଶିରରେ ଉପୁଡ଼ା ଯାଏ ।

ଚଣା:—ଧାନ କଟାପୂର୍ବରୁ ଆଶ୍ୱିନ କାର୍ତ୍ତିକରେ ଚଣା ବୁଣାଯାଏ । ଧାନକଟା ପରେ ମଧ ଚାହା ବୁଣାଯାଏ । ମଟାଲ ମାଟିରେ ଭଲହୁଏ । ମାଘ ଫଗୁଣରେ ତାହା ଅମଳ କରାଯାଏ ।

ବରଗୁଡ଼ି:—ଆଶ୍ୱିନ କାର୍ତ୍ତିକରେ ବୁଣାଯାଏ, ଫାଲଗୁନ ଚୈତ୍ରରେ ଅମଳ ହୁଏ ।

ସୋରଷ:—ଖଟାଳ ଜମିରେ ସୋରଷ ହୁଏ । ଏଥିପାଇଁ ଘଞ୍ଚା ଚାଷ ଲୋଡ଼ା । ସୋରଷ ଆଶ୍ୱିନ କାର୍ତ୍ତିକରେ ବୁଣାଯାଏ, ପୌଷରେ ଅମଳ କରାଯାଏ ।

ରାଶି:—ପଦର ଭୂମିରେ ହୁଏ । ସେଥିପାଇଁ ଗଭୀର ଚାଷ ଆବଶ୍ୟକ ନାହିଁ । ଭୋଦେଇ ରାଶି ଆଷାଢ଼ରେ ବୁଣାଯାଏ । ଭାଦ୍ରବରେ କଟାଯାଏ । ମାଘି ରାଶି ଭାଦ୍ରବରେ ବୁଣାଯାଏ; ମାର୍ଗଶିର, ପୌଷ ବା ମାଘରେ ଅମଳ କରାଯାଏ ।

ଭୂଇଁଚଣା:—ଏଥିକୁ ଢେଉଁଆ ଦୋରସା ଭୂମି ଉତ୍ତମ । ଫଳ ଆଶା ନ ରଖି କଞ୍ଚାଗଛ ଗୋଖାଦ୍ୟ ପାଇଁ ଯେ କୌଣସି ଭୂମିରେ କରାଯାଇ ପାରେ । ବେଶୀ ବର୍ଷା ନ ହେବା ସମୟରେ ଭୂଇଁଚଣା ଲଗାହୁଏ । ଆଷାଢ଼, ଆଶ୍ୱିନ, କାର୍ତ୍ତିକରେ ବୁଣା ଯାଇଥାଏ । ସାଧାରଣତଃ ଆଷାଢ଼ରେ ଲୋକେ ବୁଣନ୍ତି । ଜମିକୁ ଭଲ ଚାଷକରି ଶିଆରମାନଙ୍କରେ ଏକ ଚାଖଣ୍ଡ ଛଡ଼ାରେ ମଞ୍ଜି ପୋତା ଯାଏ । ପାଞ୍ଚ ମାସ ମଧ୍ୟରେ ତାହା ଅମଳ ହୁଏ ।

ଅଖୁ:—ନଈ ତଡ଼ିଆ ଭେଟୁଆ ଭୂମି ଅଖୁପାଇଁ ଉତ୍ତମ । ଅଖୁପାଇଁ ଗମ୍ଭୀର ଗୁଷ ଲୋଡ଼ା । ବର୍ଷାକୁ ଧରି ତାହା ଲଗାଯାଇଥାଏ । ଆମ ଏ ଅଞ୍ଚଳରେ ଅଖୁ ବୈଶାଖ ଜ୍ୟେଷ୍ଠରେ ଲଗାଯାଏ, ପୌଷ ମାଘରେ ପେଡ଼ା ଯାଏ । ଅଖୁ ଲଗାଇବା ବେଳେ ଦୁଇ ଧାଡ଼ି ଅଖୁଗଛ ମଝରେ ଭୂଇଁଚଣା, ମକ୍କା, ପିଆଜ ଲଗାଯାଇଥାଏ ।

ଲଙ୍କାମରଚ:—ଏଥିପାଇଁ ପଟୁମାଟି ଅବଶ୍ୟକ । ଜ୍ୟେଷ୍ଠ, ଅଷାଢ଼, ଆଶ୍ୱିନ ଏବ କାର୍ତ୍ତିକରେ ଲଙ୍କା ମରଚ ତଳ ବୁଣାଯାଏ । କେତେ ଦିନ ପର୍ଯ୍ୟନ୍ତ ପାଣି ମଡ଼ାଯାଏ । ଗଛ କିଛି ବଢ଼ିଗଲେ ମାଟି ଗଛ ମୂଳରେ ଅଉଜାଇ ଦେବା ଅବଶ୍ୟକ । ଲଗାଯିବା ଗୁରମାସ ପରେ ମରଚ ତୋଳା ଯାଏ ।

ପିଆଜ:—ଉର୍ବର ଦୋରସ ମାଟିରେ ଭଲ ହୁଏ । ଭୂମି ଫୁଲ୍ଲିକା ଥିଲେ ତାହା ଭଲ ଫଳେ । କାର୍ତ୍ତିକରେ ତାହା ଲଗାଯାଏ, ଫାଲ୍ଗୁନରେ ଖୋଳା ଯାଏ ।

ବାଇଗଣ:—ବର୍ଷ ମଧ୍ୟରେ ଦୁଇଦଫା ଲଗାଯାଏ । ଜ୍ୟେଷ୍ଠ, ଅଷାଢ଼ରେ ଥରେ, କାର୍ତ୍ତିକରେ ଆଉ ଥରେ ଲଗାଯାଏ । ତାହା ତଳ କରି ବୁଣାଯାଏ । ଗଛ ଅଳ୍ପ ବଢ଼ିଯିବା ପରେ ଖୋସି ଦିଆଯାଇ ଦେବାକୁ ହୁଏ । ଝୁଣ୍ଟା, ପେଣ୍ଡି, ତେଣ୍ଡା ବାଇଗଣ ସାଧାରଣତଃ ଲୋକେ ଲଗାନ୍ତି ।

ବିଲାତି ଆଳୁ:—ଲାଭ ଜନକ ବେଉଷା । ପାଣି ଛାଡ଼ିବା ପଟୁମାଟିରେ ହୁଏ । ସିଅର କରି ଏକ ଫୁଟ ଅନ୍ତରରେ ଲଗାଯାଏ । ଗୋଟିଏ ଗୋଟିଏ ଆଳୁ ଦେହରୁ ଏକାଧିକ ଗଜା ବାହାରିଲେ ଦୁଇଟି ଗଜା ରଖି ଅନ୍ୟ-ଗୁଡ଼ିକ ଭାଙ୍ଗି ଦେବା ଉଚିତ । ଆଳୁ ଆଶ୍ୱିନ କାର୍ତ୍ତିକରେ ଲଗାଯାଏ, ମାଘ ଫାଲ୍ଗୁନରେ ଖୋଳାଯାଏ ।

### ଉଦ୍ୟାନ ଫସଲ

ନଡ଼ିଆ:—ସମୁଦ୍ର କୂଳରେ ନଡ଼ିଆ ଭଲ ହୁଏ । ଅନ୍ୟ ସ୍ଥାନରେ ମଧ୍ୟ ହୁଏ, କିନ୍ତୁ ତେତେ ସମ୍ପନ୍ନ ହୁଏ ନାହିଁ । ଅନ୍ୟ ସ୍ଥାନରେ ତାହା

ଲଗାଗଲେ ଗଛ ଛୋଟ ଥିବାବେଳେ ଲୁଣ ଖାଦ ସ୍ୱରୂପ ଦେବା ଉଚିତ । ପୁରୁଣା ଗଛର ପାଚଲା ସମ୍ପୂର୍ଣ୍ଣ ଫଳ ତୋଳି ଏକମାସ ରଖିବା ପରେ ପୋତିଲେ ତିନିମାସ ମଧ୍ୟରେ ଗଜାହୁଏ । ଦୁଇହାତ ଓସାର ତିନିହାତ ଗହୀର ଗାତ କରି ଖତ ପାଁଚିଶ ଦେଇ ବର୍ଷା ଆରମ୍ଭରେ ନଡ଼ିଆ ରୋଇବା ବିଧି । ବେଳେ ବେଳେ ମାଟି ଖୋଳି ପାଣି ଦେଉଥିବା ଉଚିତ । ୧୦ ବର୍ଷ ମଧ୍ୟରେ ନଡ଼ିଆ ଫଳେ ।

ପୁନାଙ୍ଗ:—ବାଲିଆମାଟି ଏଥିକି ଉପଯୁକ୍ତ । ଅଷାଢ଼ରେ ଲଗା ଯାଏ । ପୁନାଙ୍ଗ ଫଳରୁ ତେଲ ବାହାରେ ।

କଦଳୀ:—ଅନେକ ପ୍ରକାର । ଦେଢ଼ହାତ ଗହୀର କରି କଦଳୀ ପିଲ ପୋତାଯାଏ । ଜ୍ୟେଷ୍ଠରେ କଦଳୀ ଲଗାଯାଏ, ଦେଢ଼ବର୍ଷ ମଧ୍ୟରେ ଫଳେ ।

ଲେମ୍ବୁ:—ବର୍ଷା ସମୟରେ ଲେମ୍ବୁ ଲଗାଯାଏ । ଚୂନ ଭାଗ ଅଧିକ ଥିବା ମାଟିରେ ଲେମ୍ବୁ ଭଲ ହୁଏ । ଗଛ କିଛିତ ବଢ଼ିଗଲେ ଗଛ ମୂଳରେ ପିଡ଼ିଆ ପାଉଁଶ ଦେବା ବିଧି । କାର୍ତ୍ତିକ ମାର୍ଗଶିରରେ ଲେମ୍ବୁ ଫଳେ । ମଞ୍ଜି ଗଛ ପାଞ୍ଚ ବର୍ଷରେ ଫଳେ, କଲମୀ ତିନି ବର୍ଷରେ ଫଳ ଥାଏ ।

କମଳା:—ମଞ୍ଜି ଗଛର କମଳା ସାଧାରଣତଃ ଖଟା ରହେ, କଲମୀ କମଳା ବଡ଼ ଆଉ ସ୍ୱାଦୁ ରହେ । କମଳା ବର୍ଷରେ ଦୁଇଥର ପାଚେ । ବୈଶାଖ, ଜ୍ୟେଷ୍ଠ, କାର୍ତ୍ତିକରେ କମଳା ମିଳେ ।

ଲିଚୁ:—ଏହା ଗୋଟିଏ ଅପୂର୍ବ ଫଳ । ତାହା ଓଦିଆ ଭୂମିରେ ହୁଏ । ଫଳରୁ ମଞ୍ଜି ବାହାର କରୁ କରୁ ପୋତି ଦେଲେ ଗଛହୁଏ । କେତେ ଦିନ ମଞ୍ଜି ରଖିଦେଲେ ଗଛ ହୁଏ ନାହିଁ । କଲମୀଗଛ ଅଧିକ ବଢ଼େ ନାହିଁ, ଶୀଘ୍ର ଫଳେ । ପୌଷ, ମାଘରେ ଲିଚୁ ଫୁଲ ଧରେ, ବର୍ଷା ଆରମ୍ଭରେ ପାଚେ । ଗଛମୂଳ ସର୍ବଦା ନଡ଼ ରହିବା ଦରକାର ।

ସାପୋଟା:—ଦେଖିବାକୁ ସୁନ୍ଦର ନୁହେ, ଖାଇବାକୁ ଉତ୍ତମ । କଲମକରି ତାହା ଲଗାନ୍ତୁ । ମଞ୍ଜିଗଛ ବହୁତ ବିଳମ୍ବରେ ଫଳଧରେ ।

ସାତୋଟି ବର୍ଷରେ ଦୁଇଥର ଫଳ ଧରେ । ମାଘ, ଅଷାଢ଼ରେ ସାତୋଟି ପାତେ । ଫଳ ପାଚିଯିବା ପରେ ଡାଳ କାଟି ଦିଆଯାଏ ।

ଡାଳିମ୍ବ:—ଏଥିପାଇଁ ଉଚ୍ଚ ଗୁଡ଼ବାଲି ମିଶା ମାଟି ଭଲ । ମଞ୍ଜିରୁ ଗଛ ହୁଏ, କଲମକର ମଧ୍ୟ ଲଗାନ୍ତି । ପ୍ରତିବର୍ଷ ଡାଳିମ୍ବଗଛ ମୂଳରେ ସାର ଦେଉଥିବା ଉଚିତ । ପ୍ରତିବର୍ଷ ପୁରୁଣା ଡାଳଗୁଡ଼ିକ କାଟି ନ ଦେଲେ ଭଲ ହୁଏନାହିଁ । ଡାଳିମ୍ବରେ ବେଶୀ ପୋକ ଲାଗନ୍ତି, ସେଇ ହେତୁ କସିରୁ କନା ଗୁଡ଼ାଇବାକୁ ହୁଏ । ଅଷାଢ଼, ଶ୍ରାବଣ, ମାଘ, ଫାଲ୍ଗୁଣରେ ଡାଳିମ୍ବ ଲଗାଯାଏ, ୫ ବର୍ଷଠାରେ ଫଳେ ।

ଅମୃତଭଣ୍ଡା:—ବାରମାସୀ ଫଳେ, ସବୁ ପ୍ରକାର ମାଟିରେ ହୁଏ । ଗଛ ଲଗାଯିବାର ୧୦ ମାସ ଠାରେ ଫଳେ । ଗଛ ୪ । ୫ ହାତ ଉଚ୍ଚ-ହେବା ଉପରେ ଅଗ ଖୁଣ୍ଟି ଦେଲେ ଗଛ ଛୋଟ ହୁଏ, ଫଳ ତୋଳିବାକୁ ସୁବିଧା ହୁଏ, ଫଳ ମଧ୍ୟ ପୁଷ୍ଟ ହୁଏ ।

ଗୁଆ:—ପଟୁ ମାଟିରେ ଗୁଆ ହୁଏ । ଆଶ୍ୱିନ କାର୍ତ୍ତିକରେ ଛାଇ ସ୍ଥାନରେ ତଳ ପକାଗଲେ ୩ । ୪ ବର୍ଷ ପରେ ରୁଆ ଯାଏ । ଅଷାଢ଼, ଶ୍ରାବଣ ରୋଇବା ସମୟ । ଗୁଆ ୬ । ୭ ବର୍ଷ ପରେ ଫଳେ, ୭୦ ବର୍ଷ ପର୍ଯ୍ୟନ୍ତ ବଞ୍ଚେ । ବେଳେ ବେଳେ ଗୁଆଗଛ ମୂଳ ପରିଷ୍କାର କରି ଖତ ପଙ୍କ ଦେଉଥିବା ଆବଶ୍ୟକ ।

## ବାଗ ବେଉଷା

ବାଗରେ ବାରମାସୀ ବେଉଷା ରଖିବା ଉଚିତ । ବୈଶାଖରେ ଲାଉ, କଖାରୁ, ଜହ୍ନି, କଲରା, କାକୁଡ଼ି, ଓଲ, ଅଦା ଲଗା ଯାଏ । ଲାଉ, କଖାରୁ, ଜହ୍ନି, କଲରା, କାକୁଡ଼ି ମନ୍ଦା ମନ୍ଦା କରି ଲଗାଯାଇ ଥାଏ । ଢାଙ୍କ ଦେବା ପରେ ଗଞ୍ଜା ମରିଯାଏ । କିଛି ଦିନ ପରେ ମୂଳକୁ ମାଟି ଆଉଜାଇ ଗୋବର ସାର ଦେବା ଉଚିତ ।

ଜ୍ୟେଷ୍ଠ—ଲାଉ, ଜହ୍ନି, ଝୁଟା ଲଗାଯାଏ, ମକ୍କା, ଜନ୍ଦା ମଞ୍ଜି ବୁଣାଯାଏ । ଲଙ୍କାମରିଚ. ବାଇଗଣ ମଧ୍ୟ ରୁଆଯାଏ ।

ଅଷାଢ଼—ଭେଣ୍ଡି, ହଳଦ, ଅଦା, କନ୍ଦମୂଳ, ଲାଉ, କଖାରୁ, ଜହ୍ନି, ଶିମ୍ବ ପ୍ରଭୃତି ଲଗାଯାଏ ।

ଶ୍ରାବଣ—ନଡ଼ିଆ, ଲଙ୍କାମରିଚ, ସପୁରିପନସ ରୁଆଯାଏ । ଅନ୍ୟାନ୍ୟ ଗଛମୂଳମାନଙ୍କୁ ମାଟି ଅଉଜା ଯାଏ ।

ଭାଦ୍ରବ—ଲଗିଥିବା ଗଛମାନଙ୍କୁ କୋଡ଼ା ଖୋଷା କରିବାକୁ ହୁଏ ।

ଆଶ୍ୱିନ—ମୂଳା, କୋବି ମଞ୍ଜି ବୁଣାଯାଏ; ପୋଟଳ କନ୍ଦମୂଳ ଲଗାଯାଏ; ଅମୃତଭଣ୍ଡା ରୁଆଯାଏ । ପୋଟଳ ଚାଷ ଗଞ୍ଜାମରେ ନାହିଁ । ବଙ୍ଗଦେଶରେ, କଟକ କେନ୍ଦ୍ରାପଡ଼ା ଅଞ୍ଚଳରେ ପ୍ରଚୁର ପରିମାଣରେ ହୁଏ । ପରିବା ଫଳ ମଧ୍ୟରେ ତାହା ଉତ୍କୃଷ୍ଟ । ତାହା ମଞ୍ଜିରୁ ଗଛ ହୁଏ ନାହିଁ, ଡଙ୍କରୁ ହୁଏ ।

କାର୍ତ୍ତିକ—ପିଆଜ, ମୂଳା, ଆଳୁ, ପୋଟଳ, କନ୍ଦମୂଳ ଲଗାଯାଏ ।

ମାର୍ଗଶିର—କୋବି ରୁଆଯାଏ; ତରୁଭୁଜ, ମୂଳା, ଲାଉ, କଖାରୁ, କାକୁଡ଼ି, ପିଆଜ ଲଗାଯାଏ ।

ପୌଷ—ଅଳୁ କୋବିକୁ ଜଳ ମଡ଼ାଯାଏ ।

ମାଘ—କଖାରୁ, ଲାଉ, ଫୁଟି, କଲରା, ଜହ୍ନି ଲଗାଯାଏ ।

ଫାଲ୍‌ଗୁନ—ଲାଉ, କଖାରୁ, ତରୁଭୁଜ, ଜହ୍ନି, କଲରା ଲଗାଯାଏ ।

ଚୈତ୍ର—ଲଗିଥିବା ବେଢ଼ଷା ପ୍ରତି ଜାଗ୍ରତ କରାଯାଏ ।

## କଲମୀ

ଆମ୍ବ, ଲେମ୍ବୁ କମଳା ପ୍ରଭୃତି ମଞ୍ଜିରୁ ଗଛ ହେବା ଉତ୍ତାରେ ଏହି ବାଳୁତ ଗଛଟିକୁ ବଡ଼ଗଛର ସାନ ସତେଜ ଡାଳ ସହିତ ଖଞ୍ଜି, ଖଞ୍ଜା ସ୍ଥାନରେ ମାଟି ଦେଇ କନାରେ ବାନ୍ଧି ଦିଆଯାଏ । ଖଞ୍ଜା ସ୍ଥାନରେ ମଧ୍ୟେ ମଧ୍ୟେ କିଛି କିଛି ଜଳସେଚନ କରୁ କରୁ କିଛି ସମୟ ପରେ ଖଞ୍ଜା ସ୍ଥାନଟି ଯୋଡ଼ି ହୋଇଯାଏ । ବଡ଼ଗଛର ଡାଳ, ଶ୍ରେଷ୍ଠ ଗଛର ଅଗ୍ରଭାଗଟି କାଟି ଖୋଇ ଦିଆଯାଏ । ଏହି ପ୍ରଣାଳୀକୁ କଲମୀ କହନ୍ତି । କଲମୀ ଗଛ ଅଳ୍ପ ସମୟରେ ଫଳେ, ଫଳ ପୁଷ୍ଟ ସୁସ୍ୱାଦୁ ହୁଏ । ବରଂ କଲମୀ ଗଛରୁ ୨ । ୪ ଟା ଲେଖାଏ ବାଡ଼ିରେ ମଧ୍ୟ ଲଗାଇବା ଉଚିତ ।

( ସମାପ୍ତ )

# ବାଳ ବିନୋଦ ଗ୍ରନ୍ଥମାଳା

୧ ଗୋପଲୀଲା ଶ୍ରୀ ଦାମୋଦର ମିଶ୍ର ଟ ୦ ।/
୨ ପୁରାଣ କଥା ୧ମ ଭାଗ ଜନୈକ ଶିକ୍ଷକ ଟ ୦ /
୩ ମାର୍କଣ୍ଡେୟ ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. ଟ ୦ ।
୪ ପୁରାଣ କଥା ୨ୟ ଭାଗ ଜନୈକ ଶିକ୍ଷକ ଟ ୦ /୬
୫ ସୀତାଦେବୀ ଶ୍ରୀ ଜଗନ୍ନାଥ ମହାପାତ୍ର ଟ ୦ ।
୬ ଛବି ରାମାୟଣ ଶ୍ରୀ ଦାମୋଦର ମିଶ୍ର ଟ ୦ ।/
୭ [illegible] ଭାରତ ଶ୍ରୀ ଗୋଦାବରୀଶ ମହାପାତ୍ର ଟ ୦ ୲/
୮ [illegible] ମନ୍ୟୁ ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ ଟ ୦ ୲
୯ [illegible] ଶ୍ରୀ ବାସୁଦେବ ମହାପାତ୍ର ଟ ୦ ।
୧୦ [illegible] ,, ଟ ୦ ।
୧୧ ଓ[illegible] ଶ୍ରୀ ହୃଦୟନାଥ ଷଡ଼ଙ୍ଗୀ ଟ ୦ ।
୧୨ ପ୍ରୁ[illegible] ବି. ଏ. ଏଲ୍. ଟି. ଟ ୦ ॥/୬
୧୩ ପୁରାଣ[illegible]) ଶ୍ରୀ ଗଙ୍ଗାଧର ମହାପାତ୍ର ଟ ୦ ୲
୧୪ ଯୁଧିଷ୍ଠିର [illegible] ଦାସ ଟ ୦ ୲
୧୫ କୃଷ୍ଣା [illegible] ମହାପାତ୍ର ଟ ୦ ।
୧୬ ପ୍ରୀତିଗଳ୍ପ ଶ୍ରୀ ପ[illegible] ବି. ଏ. ଏଲ୍. ଟି. ଟ ୦ ।/
୧୭ ଭରତ ଶ୍ରୀ ନୀଳକଣ୍ଠ ଦାସ ଟ ୦ ।/
୧୮ ଅନସୂୟା ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ ଟ ୦ ୲
୧୯ ହରିଶ୍ଚନ୍ଦ୍ର ଶ୍ରୀ ଦାମୋଦର ମିଶ୍ର ଟ ୦ ।/
୨୦ ପୁରାଣକଥା ୩ୟ ଭାଗ ଜନୈକ ଶିକ୍ଷକ ଟ ୦ ॥/
୨୧ ରଘୁ ଶ୍ରୀ ଶିବପ୍ରସାଦ ଦାସ ଟ ୦ ।
୨୨ ସରଳ ରଘୁବଂଶ ,, ,, ଟ ୦ ।/
୨୩ ବୁଦ୍ଧ ,, ,, ଟ ୦ ॥/
୨୪ ହିତୋପଦେଶ-କଥା ଜନୈକ ଶିକ୍ଷକ ଟ ୦ ।
୨୫ ଭାରତର ଭକ୍ତଦାସ କଥା— ଶ୍ରୀ ହୃଦୟନାଥ ଷଡ଼ଙ୍ଗୀ ଟ ୦ ୲/
୨୬ ଚନ୍ଦ୍ରହାସ ଶ୍ରୀ ବାଙ୍କନାଥ ପଟ୍ଟନାୟକ ଟ ୦ ॥/
୨୭ ଋଷି ଜୀବନୀ ୧ମ ଖଣ୍ଡ ଶ୍ରୀ ନୀଳକଣ୍ଠ ଦାସ ଟ ୦ ୲/
୨୮ ଲବ-କୁଶ ଟ ୦ ।/
୨୯ ପୁରାଣ କଥା ଲହରୀ (୨ୟ ତରଙ୍ଗ) ଶ୍ରୀ ଗଙ୍ଗାଧର ମହାପାତ୍ର ଟ ୦ ୲

